# କଥା-କଦମ୍ବ

## ପ୍ରଥମ ଭାଗ

ଶ୍ରୀ ବଦ୍ରୀନାଥ ମିଶ୍ର ବ, ଏ, ଙ୍କ ଦ୍ୱାରା
ପ୍ରଣୀତ ଓ ପ୍ରକାଶିତ ।

ପ୍ରଥମ ସଂସ୍କରଣ

PRINTED BY . N. RATH.
THE SATYABADI PRESS.
SAKHIGOPAL.
1924

ମୂଲ୍ୟ ୦ ୦ ୫୵ ଦଶ ଅଣା ମାତ୍ର

# ଉତ୍ସର୍ଗ ପତ୍ର

"ମୁକୁର"ର ସୁଯୋଗ୍ୟ ସମ୍ପାଦକ

ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ

ବି, ଏ, ମହୋଦୟଙ୍କ

କରକମଳରେ

ଉତ୍ସୃଷ୍ଟ

# ଭୂମିକା

ଏହି ପୁସ୍ତିକାରେ ସନ୍ନିବେଷ୍ଟ ଗଳ୍ପଗୁଡ଼ିକ 'ମୁକୁର' ଓ 'ଉତ୍କଳ-ସାହିତ୍ୟ'ରେ ପ୍ରଥମେ ପ୍ରକାଶିତ ହୋଇଥିଲା । ମୋର କେତେକ ସହୃଦୟ ବନ୍ଧୁ ସେଗୁଡ଼ିକୁ ପୁସ୍ତକାକାରରେ ଦେଖିବାକୁ ଇଚ୍ଛା ପ୍ରକାଶ କରିବାରୁ ଏହି ପୁସ୍ତକଟି ପ୍ରକାଶ କରିବାକୁ ସାହସୀ ହେଲି । 'ମୁକୁର'ର ସୁଯୋଗ୍ୟ ସମ୍ପାଦକ ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ ବି, ଏ, ମହାଶୟ ମୋର ଗଳ୍ପଗୁଡ଼ିକ ସମ୍ବନ୍ଧରେ ଅନୁକୂଳ ମତ ବ୍ୟକ୍ତ କରି ମୋତେ ବିଶେଷ ଭାବରେ ଉତ୍ସାହିତ କରିଅଛନ୍ତି । ସେଥିନିମନ୍ତେ ମୁଁ ତାଙ୍କଠାରେ ଚିରଋଣୀ ରହିଲି । ଇତି ।

ଶ୍ରୀ ଦୟାନିଧି ମିଶ୍ର

# ଆକର୍ଷଣ

( ସତ୍ୟଘଟଣାମୂଳକ ଗଳ୍ପ )

୧

ଆଜ ପିଲାକାଳ କଥା ମନେ ପଡ଼ିଲେ କେତେବେଳେ ସୁଖ ହୁଏ, କେତେବେଳେ ବା ଦୁଃଖ ହୁଏ । ଯେତେବେଳେ କାମଦାମ କିଛି ନ ଥାଏ, ମଣିଷ ନିଶ୍ଚିନ୍ତ ହୋଇ ଘଡ଼ିଏ ବସିବାକୁ ଅବସର ପାଏ, ପିଲାଦିନର କେତେ ପୁରୁଣା କଥା ଆସି ମନେ ପଡ଼େ । ସେ ସବୁ ଭୁଲିବାକୁ ଯେତେ ଚେଷ୍ଟା କଲେ ସୁଦ୍ଧା ଭୁଲି ହୁଏ ନାହିଁ ।

"ସ୍ମୃତି ତ କଦାପି ନୁହେ ଫିଙ୍ଗିବାର,
ଫିଙ୍ଗି ପାରିଲେ ସେ ଲଭନ୍ତା ନିସ୍ତାର ।"

କମଳା ଘର ଆମ ଘରୁ ବେଶୀ ଦୂର ନୁହେ । ଆମ ଘରେ ଥାଇ ତାକୁ ଡାକିଲେ ଶୁଣି ପାରିବ । କମଳା ସବୁବେଳେ ଆମ ଘରେ ଥାଏ, ମା' ତାକୁ କେତେ ଗେଲ କରନ୍ତି—କେତେ ଚିଜ ଖାଇବାକୁ ଦିଅନ୍ତି । ମୁଁ ମଧ୍ୟ ତା ଘରକୁ ଯାଏଁ । ସେଠାରେ ଖାଏଁ, ପିଏଁ, କେତେ ହସ କଉତୁକ କରେଁ । କମଳାର ମା' ମତେ କେତେ ଆଦର କରନ୍ତି । ସେ ଯେତେବେଳେ ମତେ 'ବାବା' ବୋଲି ଡାକନ୍ତି, କମଳା ମୁରକି ମୁରକି ହସି କେତେ ଖୁସି ହୁଏ, ସେ ମତେ ଏତେ ଭଲ ପାଏ !

କମଳା ଆଉ ମୁଁ ଏକା ସାଙ୍ଗରେ ଖେଳୁଁ । ଦାଣ୍ଡଦୁଆରେ ବସି କେତେ ବାଲିଘର ଗଢ଼ୁଁ; ପୁଣି ସେସବୁ ଭାଙ୍ଗି ପକାଇ ନୂଆ ଘର ଗଢ଼ୁଁ । ସେତେବେଳେ ମନ ସବୁବେଳେ ପ୍ରଫୁଲ୍ଲ—ଖେଳିବା ପାଇଁ ଭାରି ଆଗ୍ରହ । ବିଧାତାଙ୍କ ଚବିଶିଘଣ୍ଟିଆ ଦିନ ମନକୁ ଆସେ ନାହିଁ । ଓଃ ! ବିଧାତାଙ୍କ ଦିନଗୁଡ଼ାକ ଏତେ ଲମ୍ବ ! କେତେବେଳେ ସରେ ନାହିଁ ! ସେଥିପାଇଁ ଆମ ମନକୁ ଆମେ ସାନ ସାନ ଦିନ ସୃଷ୍ଟି କରୁଁ । ସୂର୍ଯ୍ୟଙ୍କ ଉଦୟ ଅସ୍ତ ସଙ୍ଗେ ଆମ ଦିନର କୌଣସି ସମ୍ପର୍କ ନ ଥାଏ । ସୂର୍ଯ୍ୟ ଆକାଶରେ ଥିଲେ ସୁଦ୍ଧା ଆମ ଦିନ—ରାତି ହୁଏ । ବାଲିଘର ବନାଇ ଖେଳିବାବେଳେ ଆମେ ଦିନକ ମଧ୍ୟରେ କେତେ ଦିନରାତି କଟାଉଁ ! ଆଉ ସେ କଥା କାହିଁ ? ସେ ସ୍ୱପ୍ନମୟ ରାଜ୍ୟ ଖୋଜିଲେ ଆଉ କାହୁଁ ମିଳିବ !

ବଡ଼ ଭୋରରୁ ଉଠି ଦିହେଁଯାକ ଆମ ବଗିଚାକୁ ଫୁଲ ତୋଳିବାକୁ ଯାଉଁ । ଆମ ବଗିଚାରେ ଗୋଟାଏ ଚମ୍ପାଗଛ ଅଛି । ବାପା ଗଛଟିକୁ କଟକରୁ କିଣି ଆଣି ବଗିଚାରେ ଲଗାଇଥିଲେ । ସେଥିରେ କେତେ ଫୁଲ ଫୁଟେ ! ସେ ଫୁଲ ଦେଖିଲେ ତୋଳିବା ପାଇଁ ଇଚ୍ଛା ହୁଏ ନାହିଁ । ଫୁଲଗୁଡ଼ିକ ସବୁ ସତେଜ; ଯେପରି ସୂର୍ଯ୍ୟ, ପବନ ଓ ପାଣି ତିନିହେଁ ମିଶି ସେସବୁକୁ ସତେଜ କରୁଅଛନ୍ତି । ଏପରି ଫୁଲ ତୋଳିବାକୁ କାହା ମନ ବଳିବ ? ଫୁଲକୁ ଛିଣ୍ଡାଇ ପକାଇଲେ ଫୁଲ ମନରେ କଷ୍ଟ ହେବ ଯେ ! ତା' ଦେହରୁ କେତେ ରକ୍ତ ବାହାରିବ ! ହସିଲା ଫୁଲଟି କାନ୍ଦି ପକାଇବ । ନା, ନା, ଦିଅଁ ଯେନିବେ ପରା ! ଦିଅଁଙ୍କ ପାଇଁ ସେ କାମ କରିବାକୁ ହେବ । କମଳା ଓ ମୁଁ ଚମ୍ପାଗଛ ଉପରକୁ ଉଠି ଗୀତ ଗାଇ ଗାଇ ଫୁଲ ତୋଳୁ । ଫୁଲ ନେଇ ଘରେ ମାଳ ଗୁନ୍ଥୁ । କମଳା ମୋଠାରୁ ଭଲ ମାଳ ଗୁନ୍ଥି ଜାଣେ । ତା ଫୁଲମାଳଟିକି ମତେ ଦିଏ । ମୋ ଫୁଲମାଳଟି ମୁଁ ତାକୁ ଦିଏଁ । ଫୁଲମାଳ ଧରି ଦିହେଁଯାକ ଆମ ଗାଁ ଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିରକୁ ଯାଉଁ, ଠାକୁରଙ୍କୁ ମାଳ ପିନ୍ଧାଇ ହସି ହସି ଘରକୁ ବାହୁଡ଼ି ଆସୁଁ ।

ଦିନେ ଆମେ ଚମ୍ପାଗଛରୁ ଫୁଲ ତୋଳି ଆସୁଥିଲୁଁ, ପଞ୍ଚାଏ ଟୋକା ଆସି କହିଲେ, "କାଲି ଦେଖିବ, ସବୁ ଆମେ ନେଇ ଯାଇଥିବୁଁ, ତୁମେ ଆସିଲାବେଳକୁ ଗଛରେ ଗୋଟାଏ ହେଲେ ଫୁଲ ନ ଥିବ ।" ସେମାନଙ୍କ କଥା ଶୁଣି ମୋ ମନରେ ଭାରି କଷ୍ଟ ହେଲା । କମଳା ମୁହଁକୁ ଶୁଖେଇ ଦେଇ ମୋ ମୁହଁକୁ ଅନେଇଲା । କମଳାର କଷ୍ଟ ଦେଖି ମୋ ମନରେ ଟିକିଏ ରାଗ ହେଲା । ଅଚ୍ଛା ! ଦେଖିବା, ସେମାନେ କିମିତି ଆସି ଫୁଲ ନେଇଯିବେ ! ଦୁହେଁ ପ୍ରତିଜ୍ଞା କଲୁ ଯେ, ଆରଦିନ ରାତି ଚାରିଟାବେଳେ ଆସି ଫୁଲତକ ନେଇଯିବା ।

ସେ ଦିନ ରାତିରେ ଆଉ ମୋ ଆଖିରେ ନିଦ ନାହିଁ । କେତେବେଳେ ଚାରିଟା ବାଜିବ ? ପିଲାଏ ଆସି ବଗିଚାରୁ ଫୁଲ ନେଇଯିବେ ପରା ? ତାହାହେଲେ ଆମେ କଣ ତୋଳିବୁଁ ? ଦିଅଁ କଣ ଆମ ହାତର ଫୁଲ ପିନ୍ଧିବେ ନାହିଁ ? ଆମେ କି ଦୋଷ କଲୁଁ ? ବାର ବର୍ଷର ତପସ୍ୟା କଣ ଶୁଖୁଆପୋଡାରେ ଚାଲିଯିବ ? ଏପରି ଭାବି ଭାବି ମନ ଆକୁଳ ହୋଇଗଲା । ଆଖିରେ ଆଉ ଜମା କଷା ହେଲାନାହିଁ । ଖଟ ଉପରେ ଏ କଡ ସେ କଡ଼ ହୋଇ ଛଟପଟ ହେଉଥାଏଁ ।

ଯିମିତି ଚାରିଟା ବାଜିଲା, ମୋ ଶୋଇବା ଘର କବାଟଟି ଖୁଡ୍ ଖୁଡ୍ କରି ଶବ୍ଦ କଲା । ଦ୍ୱାର ଖୋଲି ଦେଖେଁ ଯେ କମଳା ! ତାକୁ ସେପରି ଭାବରେ ରାତିରେ ଆସିବାର ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ତେବେ କଣ କମଳା ମଧ୍ୟ ମୋ ପରି ରାତିଯାକ ଶୋଇନାହିଁ ? ଫୁଲ ତୋଳିବା ପାଇଁ ତା'ର ଏତେ ଆଗ୍ରହ ? ମୁଁ ତାକୁ କିଛି ନ କହି ଚାଦର ଖଣ୍ଡି ଘୋଡ଼େଇ ହୋଇ ତା ସଙ୍ଗରେ ବଗିଚାକୁ ଗଲି ।

ସେତେବେଳକୁ ଆକାଶରେ ଚନ୍ଦ୍ର ଥିଲେ । ତାରାଗୁଡିକ ସ୍ୱାରିଫୁଲ ଫୁଟିଲା ପରି ଆକାଶରେ ଜୁଳୁ ଜୁଳୁ ଦିଶୁଥାନ୍ତି । ପାହାନ୍ତିଆ ପବନ ଫୁଲରେଣୁ

ଉଡ଼ାଇ ବଗିଚ୍ଚଯାକ ମହକାଇ ସୁଲୁ ସୁଲୁ ବହୁଥିଲା । ଚମ୍ପାଫୁଲ-ଗୁଡ଼ିକ ବୃନ୍ତାସନରେ ବସି ପବନ-ଦୋଳାରେ ଦୋଳୁଥିଲେ । ବଗିଚ୍ଚର ଚାରିଆଡ଼େ ଚନ୍ଦ୍ର-କିରଣ ହସୁଥିଲା । ଫୁଲ ଉପରେ ଚନ୍ଦ୍ରକିରଣ, ପତ୍ର ଉପରେ ଚନ୍ଦ୍ରକିରଣ, ସବୁଠେଇଁ ଚନ୍ଦ୍ରକିରଣ । ଯେଉଁଠି ଚନ୍ଦ୍ରକିରଣ ପଡ଼ୁଥିଲା, ନିଜେ ହସି ପରକୁ ହସାଉଥିଲା । ବଗିଚ୍ଚଟି ଯେପରି ଚନ୍ଦ୍ରର ରାଜ୍ୟ ।

କିନ୍ତୁ ଏ ସବୁ ଦେଖିବା ପାଇଁ ଆମ ଆଖି କାହିଁ ? ଆମ ମନ ରହିଲା ଫୁଲ ତୋଳିବା ଉପରେ । କାଲେ ଲୋକାଏ ଆସି ଫୁଲ ନେଇ ଯାଇଥିବେ ! ବଗିଚ୍ଚରେ ପହଞ୍ଚିଲାକ୍ଷଣି ଦୁହେଁଯାକ ମାଙ୍କଡ଼ ପରି ଗଛ ଉପରକୁ ଚଢ଼ିଗଲୁ । କମଳା ଗୋଟିଏ ଶାଖାରେ ବସି ଫୁଲ ତୋଳିଲା; ମୁଁ ଆଉ ଗୋଟିଏ ଶାଖାରେ ବସି ଫୁଲ ତୋଳିବାକୁ ଲାଗିଲି ।

ମୋ ପାଖର ଫୁଲତକ ତୋଳି ସାରି କମଳା ଯେଉଁ ଡାଳରେ ବସି ଫୁଲ ତୋଳୁଥିଲା, ସେଠିକି ଗଲି । ସେଠିକି ଯାଇ ଦେଖିଲି ଯେ, ଅଗ ଡାଳର ଫୁଲଗୁଡ଼ାକ କମଳା ତୋଳି ପାରୁ ନାହିଁ । ମତେ ଦେଖି ସେ ଘୁଞ୍ଚିଗଲା ଓ କହିଲା, "ତୁମେ ସେଠାକୁ ଯାଅନା, ସରୁ ଡାଳ ଭାଙ୍ଗିଯିବ ।"

ମୁଁ କିନ୍ତୁ ତା କଥା ଶୁଣିଲି ନାହିଁ । ଆଜି ବଗିଚ୍ଚରେ ଗୋଟାଏ ସୁଦ୍ଧା ଫୁଲ ରଖିବାକୁ ଦେବ ନାହିଁ । ଆଜି ଫୁଲଯାକ ଦାଅଁ ପିଡ଼ିବେ, ଆଉ କେହି ନେଇ ପାରିବେ ନାହିଁ । ସେଥିପାଇଁ କମଳା କଥା ନ ଶୁଣି ଡାଳ ଉପରକୁ ଉଠିଲି । ଖୁବ୍ ସାବଧାନ ହୋଇ ଫୁଲସବୁ ତୋଳିଲି; କିନ୍ତୁ ଗୋଟାଏ ଫୁଲ ରହିଗଲା । ଯେତେ ଚେଷ୍ଟା କଲେ ସୁଦ୍ଧା ସେ ଫୁଲଟି ତୋଳି ପାରିଲି ନାହିଁ । ଆଉ ଟିକିଏ ଉପରକୁ ଉଠିଲି । ଯେଉଁ ଡାଳରେ ଫୁଲଟି ଥିଲା, ହାତ ଲମ୍ବାଇ ସେ ଡାଳଟି ଧରିଲି । ଡାଳ ଉପରେ ହାତ ଦେଇ ଧୀରେ ଧୀରେ ଫୁଲ ନିକଟକୁ ହାତ ନେବା ପାଇ

ଚେଷ୍ଟା କଲି । ଫୁଲଟି ଠିକ୍ ଛୁଇଁବାକୁ ଯାଉଛି, ଡାଳ ଭାଙ୍ଗିଗଲା । ଡାଳ ଭାଙ୍ଗିବା ସଙ୍ଗେ ସଙ୍ଗେ ମୁଁ ଯେଉଁ ଡାଳଟି ହାତରେ ଧରିଥିଲି, ସେ ଡାଳ ମଧ୍ୟ ଭାଙ୍ଗିଗଲା । ଆଉ ଆଶ୍ରୟ କାହିଁ ? ଭୂମି ଉପରେ ଦୁମ୍ କରି କଚଡ଼ି ପଡ଼ିଲି । ଦେହ ମୁଣ୍ଡ ସବୁ ଖଣ୍ଡିଆ ହୋଇଗଲା । ପ୍ରାୟ ଦୁଇ ମିନିଟ ପରେ ଅଚେତ ହୋଇଗଲି । ତା'ପରେ ଆଉ କଣ ହେଲା, ଜାଣେ ନାହିଁ ।

୨

ଯେତେବେଳେ ମୋର ଚେତନା ହେଲା, ଦେଖିଲି ଯେ ମୁଁ ଗୋଟିଏ କୋଠରୀରେ ଖଟ ଉପରେ ଶୋଇଛି । ମୋ' ପାଖରେ ଜଣେ ସାହେବ ଚଉକି ଉପରେ ବସିଛନ୍ତି । ବାପା ମଧ୍ୟ ଆଉ ଗୋଟାଏ ଚଉକିରେ ସାହେବ ପାଖରେ ବସିଛନ୍ତି । ମୁଁ ଯିମିତି ଆଖି ମେଲି ଚାହିଁଲି, ସାହେବ ଇଂରେଜୀରେ କଅର ମଅର କରି ବାପାଙ୍କୁ କଣ କହିଲେ । ବାପା ମଧ୍ୟ ସାହେବଙ୍କୁ ଇଂରେଜୀରେ ଜବାବ ଦେଲେ । ପରେ ସାହେବ ବାପାଙ୍କୁ ଆଉ କଣ କହି ଧୀରେ ଧୀରେ ଚାଲିଗଲେ ।

ସାହେବ ଚାଲିଗଲା ପରେ ମା' ଓ ବହୂ ଦୁହେଁଯାକ କୋଠରୀ ଭିତରକୁ ଆସିଲେ । ମା' ମୁଣ୍ଡ ପାଖରେ ବସି ମୋ ମୁଣ୍ଡ ଆଉଁସିବାକୁ ଲାଗିଲେ । ବହୂ ପିଠି ପାଖରେ ବସି ପିଠି ଆଉଁସିଲେ ।

ଆଜି ମା'–ବହୂ ଦୁହିଁଙ୍କ ଆଖିରେ ଲୁହ । ବାପା ମଧ୍ୟ କାନ୍ଦୁଛନ୍ତି । ମୁଁ ଏଥିର କାରଣ କିଛି ବୁଝି ପାରିଲି ନାହିଁ । ମୁଁ କେଉଁଠି ଅଛି, ସେଠାକୁ କିପରି ଆସିଲି, ଏ ସବୁ ଜାଣିବା ପାଇଁ ମୋର ଭାରି ଆଗ୍ରହ ହେଲା । କିନ୍ତୁ ଯେତେ ଚେଷ୍ଟା କଲେ ସୁଦ୍ଧା ଜାଣି ପାରିଲି ନାହିଁ ।

ମା'ଙ୍କୁ କଣ କରିବାକୁ ଆଦେଶ ଦେଇ ବାପା କୋଠରୀରୁ ଚାଲି ଗଲେ । ବହୂ ଏକା ମୋ ପାଖରେ ରହିଲେ । ତାଙ୍କ ଆଖିରୁ ଝର ଝର

ଲୁହ ଗଡୁଛି । ସବୁବେଳେ ମୋ ଦେହକୁ ଆଉଁସୁଛନ୍ତି । ବାପା ମା' ଚାଲି ଯିବାରୁ ମୁଁ ବହୂଙ୍କୁ ପଚାରିଲି, "ବହୂ, ଆମେ ଏଠିକି କାହିଁକି ଆସିଛୁଁ ? ଏଠିକି ଆମକୁ କିଏ ଆଣିଲା ?"

ମୋ କଥା ଶୁଣି ବହୂ ଆହୁରି କାନ୍ଦିଲେ । ପଶନ୍ତରେ ଲୁହ ପୋଛି ପୋଛି କହିଲେ, "ଡାକ୍ତର ମନା କରିଛନ୍ତି ।" ସତକୁ ସତ, ବହୂଙ୍କ ମୁହଁରୁ କଥା ନ ସରୁଣୁ ମୋ ଦେହଯାକ ଜ୍ୱର ପୋଡିବାକୁ ଲାଗିଲା । ଘା'ରୁ ରକ୍ତ ବାହାରିବାକୁ ଲାଗିଲା । ମୁଁ ପୁଣି ଅଚେତ ହୋଇ ପଡିଲି । —

ଏପରି କେତେବେଳ ଯାଏ ମୁଁ ଅଚେତ ହୋଇ ପଡିଲି, ଭଗବାନ ଜାଣନ୍ତି । କିନ୍ତୁ କେଜାଣି କାହିଁକି, ମତେ ସେ ଅବସ୍ଥାଟି ଭଲ ଲାଗିଲା । ଈଶ୍ୱରଙ୍କ ରାଜ୍ୟରେ ପ୍ରତ୍ୟେକ ପଦାର୍ଥର ଉପକାରିତା ଅଛି । ମୂର୍ଚ୍ଛା ମରଣ ସଙ୍ଗେ ସମାନ ହେଲେ ସୁଦ୍ଧା କ୍ଷଣକପାଇଁ ମନୁଷ୍ୟକୁ ସଂସାରର ଦୁଃଖ-ସୁଖରୁ ଅନେକ ଦୂରକୁ ନେଇଯାଏ । ଯେଉଁ ବିଷ ମନୁଷ୍ୟର ପ୍ରାଣ ନିଏ, ସେହି ବିଷ ପୁଣି ଔଷଧରୂପେ ମନୁଷ୍ୟକୁ ରକ୍ଷା କରେ । ଭଗବାନଙ୍କ ଲୀଳା କିଏ ବୁଝି ପାରିବ ? ମୁଁ ଯେତେବେଳ ଯାଏ ମୂର୍ଚ୍ଛିତ ଅବସ୍ଥାରେ ଥିଲି, ମୋର ଦୁଃଖ-ସୁଖ-ଜ୍ଞାନ ନ ଥିଲା । ସେତେବେଳେ ମୁଁ କେଉଁ ରାଜ୍ୟରେ ବୁଲୁଥିଲି, ଭଗବାନ ଜାଣନ୍ତି ।

କିନ୍ତୁ ବେଶୀ ବେଳଯାଏ ଏ ସୁଖ ଭୋଗ କରି ପାରିଲି ନାହିଁ । ପୁଣି ଶୀଘ୍ର ମୋର ଚେତନା ହେଲା । ଆଖି ଖୋଲି ଦେଖିଲି ଯେ, ମା' ଘା ସବୁ ଧୋଇ କରି ସେଥିରେ ମଲମ ଲଗାଉଛନ୍ତି । ବହୂ ପଙ୍ଖା ଧରି ବିଞ୍ଚୁଛନ୍ତି ।

ଏପରି ମୂର୍ଚ୍ଛା ଓ ଚେତନାର କେତେ ଅଭିନୟ ହେଲା, ଲେଖିବାକୁ ଶକ୍ତି ନାହିଁ । ସେ କଥା ଆଜି ମନେ ପଡିଲେ ଲେଖନୀ ଥରି ଯାଉଛି ! ହୃଦୟ ଅବସନ୍ନ ହୋଇ ଯାଉଛି ! ଆଖିରୁ ଅବିଶ୍ରାନ୍ତ ଲୁହ ଗଡୁଛି ! ଓଃ ! ଦୁଃଖର ସମୟ ଏତେ କଠିନ—ଏତେ ନିଷ୍ଠୁର ! ଭଗବାନ ଏ ଦୁଃଖ ମଧ୍ୟରେ କି ସୁଖ ନିହିତ କରି ଅଛନ୍ତି, କିଏ କହିପାରେ ?

୩

ମନୁଷ୍ୟର ଅବସ୍ଥା ଚିରଦିନ ସମାନ ନ ଥାଏ । ଦୁଃଖ ପରେ ସୁଖ—ସୁଖ ପରେ ଦୁଃଖ ଲାଗିଛି । "ଚକ୍ରବତ୍ ପରିବର୍ତ୍ତନ୍ତେ ଦୁଃଖାନି ଚ ସୁଖାନି ଚ" । ମୋର ଦୁଃଖ ମଧ୍ୟ ବେଶି ଦିନ ରହି ନ ଥିଲା । ଭଗବାନଙ୍କ କୃପାରୁ ମୁଁ ଶୀଘ୍ର ଆରୋଗ୍ୟ ଲାଭ କଲି ।

ସେ ଆଜ ଅନେକ ଦିନର କଥା । ଏଥି ମଧ୍ୟରେ ଅନେକ ପରିବର୍ତ୍ତନ ହୋଇ ଗଲାଣି । ବାପା ମତେ ଆଉ ଗାଁକୁ ଛାଡନ୍ତି ନାହାନ୍ତି । ତାଙ୍କ ସଙ୍ଗେ କଟକରେ ରହି ପାଠ ପଢୁଛି । ମା' ହୋଇକା ମୋ ଦେହ ଭଲ ହେଲାରୁ ଗାଁକୁ ଚାଲିଗଲେ । ବାପା କଟକରେ ଓକାଲତି କରନ୍ତି । ଗାଁରେ ଜମିଦାରି ବୁଝିବା ପାଇଁ କେହି ନ ଥିବାରୁ ମା' କଟକକୁ ଆସି ପାରନ୍ତି ନାହିଁ । ଭାଇ ଏ ବର୍ଷ B. A. ପାସ୍ କରି କଲିକତାରେ M. A. ପଢୁଛନ୍ତି । ମୁଁ Matriculation ପାସ୍ କରି କଟକ କଲେଜରେ ପଢୁଛି ।

ମୁଁ ତମ୍ଭାଗଛରୁ କି ଲଗ୍ନରେ ପଡିଲି, କେଜାଣି, ପିଲାକାଳ କଥା ଆଉ ଜମା ମନେ ନାହିଁ । ଗାଁକୁ ଯିବାପାଇଁ ଆଉ ଜମା ଇଚ୍ଛା ହେଉ-ନାହିଁ । ବାପା ମଧ୍ୟ ମତେ ଆଉ ଗାଁକୁ ଛାଡି ଦେଉ ନାହାନ୍ତି । ମା' ଯେତେ ଲେଖିଲେ ସୁଦ୍ଧା ବାପା ମାନୁ ନାହାନ୍ତି । ତାଙ୍କ ଇଚ୍ଛା—ପଢ଼ା ଶେଷ ହେବା ଯାଏ ମୁଁ କଟକରେ ରହିବ, ମୋର ମଧ୍ୟ ସେହି ଇଚ୍ଛା ।

ବାପା କଟକରେ କାହାରି ସଙ୍ଗେ ମତେ ମିଶିବାକୁ ଦିଅନ୍ତି ନାହିଁ । ସେ କହନ୍ତି—"କଟକ ସହର କଳିର ରାଜଧାନୀ । ଏପରି ସ୍ଥାନରେ ପିଲାମାନଙ୍କୁ ଆକଟ କରି ରଖିବା ଉଚିତ ।" ମା ମଧ୍ୟ ଦିନେ କହୁଥିଲେ—"କଟକ ସହର, ଦେଖିକରି ଚାଲିବ, ସେଠେଇଁ ମାଟି—ପଥର ମଧ୍ୟ କଥା କହନ୍ତି ।" ତେବେ କଟକରେ ସମସ୍ତେ ଯେ ଖରାପ, ଏ କଥା କିଏ କହିବ ? ସେ ଯାହାହେଉ, ବାପାଙ୍କ କଥା ମାନି ଚଳିବାହିଁ ମୋର କାର୍ଯ୍ୟ ।

ଦିନେ ମୁଁ ଘରେ ବସି ପଢୁଛି, ଡାକବାଲା ଆସି ମୋ ହାତରେ ଚିଠି ଖଣ୍ଡିଏ ଦେଇଗଲା । ଚିଠି ଖୋଲି ପଢିଲି; କିନ୍ତୁ ତହିଁର ଅର୍ଥ ବୁଝି ପାରିଲି ନାହିଁ । ଚିଠି କେଉଁଠାରୁ ଆସିଛି, କିଏ ଲେଖିଛି, କିଛି ଠିକ୍ କରି ପାରିଲି ନାହିଁ । ହସ୍ତାକ୍ଷର ଯେପରି ମୁଁ କେବେ ଦେଖିଛି । କି ସୁନ୍ଦର ମୁକ୍ତାପରି ଅକ୍ଷର ! ଅଗାଡିର ଗର୍ଭ ତନ୍ନ ତନ୍ନ କରି ଖୋଜିଲି, କିନ୍ତୁ କୌଣସିଠାରେ କିଛି ପାଇଲି ନାହିଁ । ଚିଠି କିଏ ଲେଖିଛି ? ମୋଠାକୁ କାହିଁକି ଲେଖିଛି ? ମୋ ସଙ୍ଗେ ତାର କି ସମ୍ପର୍କ ? ଏ ସବୁ ଜାଣିବାପାଇଁ ଅନେକ ଚେଷ୍ଟା କଲି, କିନ୍ତୁ କିଛି ଠିକ୍ କରି ପାରିଲି ନାହିଁ । ପୁଣି ଚିଠି ଖୋଲି ପଢିଲି—

"ବିନୋଦ ବାବୁ ,

ମୋର ପରିଚୟର ଭୂମିକା ଅନାବଶ୍ୟକ । ବର୍ତ୍ତମାନ ମୋର ଅନ୍ତିମ କାଳ ଉପସ୍ଥିତ । ତୁମ୍ଭଙ୍କୁ ଦେଖିବା ପାଇଁ ମୋ ମନ ଅତିଶୟ ବ୍ୟାକୁଳ । ଯଦି ପୂର୍ବ ପରିଚୟର ଆଦର ଥାଏ, ଶୀଘ୍ର ଆସି ମୋର ଉତ୍କଣ୍ଠା ଦୂର କରିବ । ଇତି ।

ତୁମ୍ଭର

କ—"

ଚିଠି ପଢି ମୋ ମନ ବ୍ୟାକୁଳ ହେବାକୁ ଲାଗିଲା । ମୁଁ ଯେପରି ଅନ୍ଧକାର ମଧ୍ୟରେ ଆଲୋକ ଦେଖିବାକୁ ପାଇଲି, କିଏ ଯେପରି ମୋ ନିକଟକୁ ଆସି କାନେ କାନେ କହିଲା, "ଯାଅ; ବିଚାରୀ ତୁମ ପାଇଁ କେତେ କଷ୍ଟ ପାଉଛି !" କିନ୍ତୁ ବିଚାରୀ କିଏ ? ସେ ମୋ ପାଇଁ କାହିଁକି କଷ୍ଟ ପାଉଛି ?

ଏ କେତେଦିନ ମୋ ହୃଦୟ-ଯନ୍ତ୍ରର ତାର ଛିଣ୍ଡି ଯାଇଥିଲା । ଯନ୍ତ୍ରକୁ ଲୟ-ବିଶିଷ୍ଟ କରିବାପାଇଁ ଅନେକ ଚେଷ୍ଟା କରିଥିଲି; କିନ୍ତୁ ମୋର ସକଳ ଚେଷ୍ଟା ବିଫଳ ହୋଇଥିଲା । ଏ ଚିଠି ପଢିଲା କ୍ଷଣି ଛିନ୍ନ

ତାର ଗୁଡ଼ିକ ଯୋଡ ହୋଇଗଲା । ହୃଦୟଯନ୍ତ୍ର ପୁଣି ଲକ୍ଷ୍ୟ–ବିଶିଷ୍ଟ ହେଲା । କେଉଁ ଅଜ୍ଞାତ ରାଜ୍ୟର ଛବି ମୋର ସ୍ମୃତିପଟରେ ଅଙ୍କିତ ହେଲା ।

ଏ ମୂର୍ତ୍ତି ମୁଁ ଅନେକ ଥର ଦେଖିଛି । ତା' ସଙ୍ଗେ କେତେ ଖେଳିଛି ! ସ୍ୱପ୍ନରେ, ଜାଗରଣରେ ତାହାର ମୂର୍ତ୍ତିକୁ ଧ୍ୟାନକରି କେତେ ସୁଖପାଇଛି ! ଛି ! ମୁଁ ଏଡ଼େ କୃତଘ୍ନ ! ଆଜ ଏ ସ୍ନେହମୟୀ ମୂର୍ତ୍ତି ମୋ ସ୍ମୃତିପଟରୁ ଲୁପ୍ତ ! ମୋତେ ଦେଖିବାପାଇଁ ସେ ଏତେ ବ୍ୟାକୁଳ ! କିନ୍ତୁ ମୁଁ ତ ତା' କଥା ଘଡିଏ ହେଲେ ଭାବୁନାହିଁ । କବି ଯଥାର୍ଥ କହିଛନ୍ତି—

"Sigh no more, Lady, sigh no more;
Men were constant never"

କମଳା ! ସ୍ନେହମୟୀ କମଳା ! ତୋର ବାଲ୍ୟ ସହଚରକୁ ତୁ ଏତେ ଭଲପାଉ ! ତା'ପାଇଁ ତୋର ଏତେ ଉତ୍କଣ୍ଠା ! କିନ୍ତୁ ତୋର ସେ ସୁନ୍ଦର ମୁଖ ଆଉ ଦେଖିପାରିବି କି ? ତୁ ସ୍ୱର୍ଗର ଜୀବ; ତୋର ଚତୁର୍ଦ୍ଦିଗରେ ଦେବତାମାନେ । ସେ ରାଜ୍ୟକୁ ଯିବାକୁ ମୋର ଅଧିକାର ଅଛି କି ?

× × × ×

ଆଉ ଭାବି ପାରିଲି ନାହିଁ । ହୃଦୟ କମଳାମୟ ହୋଇଗଲା । ଯେଉଁଠାରେ ଅନାଇଲି ସେହିଠାରେ କମଳା । ଆକର୍ଷଣ ପ୍ରଭାବରେ ଭଗବାନ୍ ଟଳିଯାନ୍ତି—ମନୁଷ୍ୟ ଛାର କେତେ ମାତ୍ର ! ବାପାଙ୍କୁ ନକହି ସେହିଦିନ ଟ୍ରେନରେ ଗାଁକୁ ବାହାରିଗଲି ।

୪

ଗାଁକୁ ଗଲା ବେଳକୁ ପ୍ରଭାତ ହେବାକୁ ଅନେକ ବାକି ଅଛି । ଗାଁରେ କୌଣସିଠାରେ କିଛି ଶବ୍ଦ ନାହିଁ । ଚତୁର୍ଦ୍ଦିଗ ନିସ୍ତବ୍ଧ । କିନ୍ତୁ କମଳା ଘର ନିକଟକୁ ଯାଇ ଦେଖେଁ ଯେ, କାନ୍ଦ ବୋବାଳି ଲାଗିଛି । ସେ କ୍ରନ୍ଦନ ଶୁଣି ମୋର ହୃଦୟ ଚମକି ଉଠିଲା । ମୁଁ ଉନ୍ମତ୍ତ ପ୍ରାୟ ଘର ଭିତରେ ପ୍ରବେଶ କଲି ।

ଘର ଭିତରକୁ ଯାଇଁ ଦେଖେଁ, ଅଗଣାରେ ଅନେକ ଲୋକ ଜମା ହୋଇଛନ୍ତି । କମଳାର ପ୍ରଶାନ୍ତ ମୂର୍ତ୍ତି ଗୋଟିଏ ଖଟ ଉପରେ ସ୍ଥାପିତ ହୋଇଅଛି । ଓଃ ! କି ଭୀଷଣ ଦୃଶ୍ୟ ! ମୁଁ ଆଉ ରହିପାରିଲି ନାହିଁ । କମଳା ନିକଟକୁ ଯାଇ ତାକୁ ଆଲିଙ୍ଗନ କରି କମ୍ପିତ କଣ୍ଠରେ କହିଲି—"କମଳା ! କମଳା !" ଆଉ କହି ପାରିଲି ନାହିଁ, ମୋର ବାକ୍ୟ ରୁଦ୍ଧ ହୋଇଗଲା ।

ମୋ'କଥା ଶୁଣି କମଳାର ଯନ୍ତ୍ରଣା—କାତର ଓ ବିବର୍ଣ୍ଣ ମୁଖରେ ଏକ ଅପୂର୍ବ ଜ୍ୟୋତି ଫୁଟି ଉଠିଲା । ନିମୀଳିତ ନେତ୍ରଦ୍ୱୟ ଉନ୍ମୀଳିତ ହେଲା; କିନ୍ତୁ ପୁଣି ଘୋର ଅନ୍ଧକାର ! କମଳାର ପିଞ୍ଜରା ଛାଡ଼ି ପ୍ରାଣ ଚାଲି ଗଲା !

× × × ×

କମଳାର ପ୍ରାଣହୀନ ଦେହ ନିଶ୍ଚଳ ହେଲା । ମୋର ସକଳ ଆଶା ଭରସା ବିଲୁପ୍ତ ହେଲା । ଚତୁର୍ଦ୍ଦିଗ ଅନ୍ଧକାର ଦିଶିଲା । କମଳାର ଶୀତଳ ଦେହକୁ କୋଳରେ ରଖି କାନ୍ଦିବାକୁ ଲାଗିଲି । ସେ ଦେହରେ ସ୍ୱର୍ଗୀୟ କାନ୍ତି ଝଲସି ଉଠୁଥିଲା । ଲାବଣ୍ୟମୟ ଓ ମହିମା-ମଣ୍ଡିତ ମୁଖମଣ୍ଡଳ ଅବିକୃତ—ଜ୍ୟୋତିର୍ମୟ !

× × × ×

ପ୍ରଭାତର ତରୁଣ ଅରୁଣାଲୋକ କମଳାର ମୃତ୍ୟୁ-ଛାୟା—ମଣ୍ଡିତ ବଦନ-ମଣ୍ଡଳରେ ଆସି ପଡ଼ିଲା ! ସ୍ନିଗ୍ଧ ପ୍ରଭାତ-ସମୀର ତାର ନିତମ୍ବ-ସ୍ପର୍ଶୀ କେଶ-ଦାମ ସଙ୍ଗେ କ୍ରୀଡ଼ା କରିବାକୁ ଲାଗିଲା । ସ୍ୱର୍ଗର ଜୀବ ସ୍ୱର୍ଗକୁ ଚାଲିଗଲା । କିନ୍ତୁ * * ! ଆଜି ଜାଣିଲି, ବାପା କାହିଁକି ମତେ ଗାଁକୁ ଛାଡ଼ି ଦେଉ ନଥିଲେ । କିନ୍ତୁ ଆଉ କାହିଁ ! ସବୁ ଶେଷ ! ! !

# ଶାନ୍ତି

## ପ୍ରଥମ ପରିଚ୍ଛେଦ

### କ୍ଷୀଣ ଆଲୋକ

"ଅଲୋ ଶାନ୍ତି"

'ମା'

" ପୋଡ଼ା ମୁହଁ, ଦୁଃଖ ନାହିଁ, ସୁଖ ନାହିଁ, ସବୁବେଳେ ଖାଲି ଖେଳୁଛୁ। ମୁଁ ତତେ କେତେ କହିବ!"

ଶାନ୍ତି ଦାଣ୍ଡଦୁଆରେ ସାଙ୍ଗ ପିଲାଙ୍କ ସଙ୍ଗେ ଖେଳୁଥିଲା। ମା'ଙ୍କ ଡାକ ଶୁଣି ଖେଳ ଛାଡ଼ି ଦଉଡ଼ି ଦଉଡ଼ି ମା'ଙ୍କ ନିକଟକୁ ଆସିଲା। ଶାନ୍ତିକୁ ଦେଖି ମା' କହିଲେ, " ହଇଲୋ, ତତେ ବେଳ ଦିଶୁ ନାହିଁ ! ସବୁବେଳେ ଖେଳୁଥିବୁ ! ଆଜ ରାଇଜର ଦଶା କଣ! ଗ୍ରେର ବୋଲୁଛି ମୁଁ, ଖଣ୍ଡ ବୋଲୁଛି ମୁଁ ! ତୁନି ହୋଇ ଘରେ ବସିଥିଲେ କିମିତି ହୁଅନ୍ତା ?"

ଜନନୀଙ୍କ ମୃଦୁ ଭର୍ତ୍ସନା ଶୁଣି ଶାନ୍ତି ଅପ୍ରତିଭ ହେଲା। ତଳକୁ ମୁହଁ କରି ନଖରେ ଗାର କାଟିବାକୁ ଲାଗିଲା। କିଛିକ୍ଷଣ ପରେ କହିଲା, " ମା, କମଳା ଆଉ ବିମଳା ଆସିଥିଲେ। ସେମାନଙ୍କ ସଙ୍ଗେ ଖେଳୁଥିଲି।"

"ଦିନବେଳେ ଖେଳିଲେ ହୁଅନ୍ତା ନାହିଁ ? ଅନ୍ଧାର ହୋଇ ଗଲାଣି; ତଥାପି ତୋର ଖେଳ ସରୁନାହିଁ !"

" ନା, ମା, ଆଉ ଅନ୍ଧାର ଯାଏ କେବେ ବାହାରେ ରହିବ ନାହିଁ; କାଲିଠଉଁ ଦିନ ଥାଉଁ ଥାଉଁ ଘରକୁ ଆସିବ ।"

ଶାନ୍ତିର କଥା ଶୁଣି ମା' ଆନନ୍ଦିତ ହେଲେ । ତାକୁ ପାଖକୁ ଡାକି କହିଲେ, " ମା' ମୋର ! ତୁ ମୋର ଦୁଃଖିର ସଙ୍ଗାଳି । ଗାଉଁଲି ଗାଁରେ ଆମ ଦୁଃଖ ସୁଖ କିଏ ବୁଝିବ ? ତତେ ଘଡିଏ ନ ଦେଖିଲେ ମୋ ଆଖିରୁ ତର୍ ଖସିପଡେ । ଆଜି, ଦେଖୁଛୁ ଗ୍ରୋଇଅଡେ ଗୋର-ଗୋଳ । ଆଜି କେଉଁ ଗାଁ ପୋଡେଇ ଦେଉଛନ୍ତି ତ, କାଲି କାହା ଘରେ ଡକାଏତି କରୁଛନ୍ତି । ଏ ଖଣ୍ଡଗୁଡାକର ଦୟା ମାୟା କିଛି ନାହିଁ । ମା' ମୋ ମୁଣ୍ଡ ଖାଇବୁ, ଆଉ ଅନ୍ଧାରେ କେବେ ବାହାରେ ରହିବୁ ନାହିଁ ।"

ମା'ଙ୍କ କଥା ଶୁଣି ଶାନ୍ତି ମନରେ ଭୟ ହେଲା । ସେ କହିଲା, "ମା, ଏ ଗ୍ରୋରଗୁଡାକ କେଉଁଠୁ ଆସିଛନ୍ତି ?"

ଏମାନଙ୍କ ଘର କାହିଁ ଯାଇ ଲଙ୍କାରେ ! ଏମାନଙ୍କୁ ଲୋକେ ମରହଟ୍ଟା ବୋଲି କହନ୍ତି । ଖାଲି ହାଣ କାଟ କରି ଏମାନେ ଦୁଃଖୀ ଲୋକଙ୍କ ସର୍ବନାଶ କରୁଛନ୍ତି ।

" ମା' ଏମାନେ ସବୁ ହିନ୍ଦୁ ? ଆମ ଜଗନ୍ନାଥ ମହାପ୍ରଭୁଙ୍କୁ, ସମଲଇଙ୍କୁ ପୂଜା କରନ୍ତି ! ଏମାନେ ହିନ୍ଦୁ ହୋଇ କାହିଁକି ଆମମାନଙ୍କୁ ଏପରି ଦୁଃଖ ଦେଉଛନ୍ତି ? "

" କଣ କହିବ, ଲୋ ଝିଅ ? ଏଗୁଡାକ କଣ ମଣିଷ ! ପଶୁଠାରୁ ବି ହୀନ ! ଖାଲି ମାରପିଟି ଠେଙ୍କା ପଇସା ନେଉଛନ୍ତି !"

ଶାନ୍ତି ପିଲିଲୋକ । ବୟସ ପ୍ରାୟ ଚଉଦ ବର୍ଷ । ତା'ପରେ ମଫସଲରେ ରହି ବାହାର କଥା କିଛି ଜାଣି ନ ଥିଲା । ଗ୍ରୋରମାନଙ୍କ

କଥା ଶୁଣି ତା'ମନରେ ଭୟ ହେଲା—ଭୟରେ ସର୍ବାଙ୍ଗ ଥରିଗଲା । ସେ ଯାକି ହୋଇ ମା'ଙ୍କ ପାଖରେ ଛିଡ଼ା ହୋଇ କହିଲା, " ମା, ଆଜି ମତେ ଭାରି ଡର ମାଡୁଛି । ଆମ ଗାଁକୁ ଚୋରମାନେ ଆସିଲେ କମିତି କରିବା ? ଆମ ଗାଁଯାକ ନିଆଁ ଲଗାଇ ଦେବେ । ଆମ ଘରେ ଡ଼କାଏତି କରିବେ । ମା' କିଏ ଆମଙ୍କୁ ରକ୍ଷା—"

ଶାନ୍ତି ଆହୁରି କହିବାକୁ ଯାଉଥିଲା; କିନ୍ତୁ କହି ପାରିଲା ନାହିଁ । ପଛରୁ କିଏ ଆସି କହିଲା, " ଭୟ ନାହିଁ —ଭୟ ନାହିଁ ।"

ଏ ଅଭୟ-ବାଣୀ ଶୁଣି ମା-ଝିଅ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ପଛକୁ ଅନାଇ ଦେଖିଲେ, ଜଣେ ଯୁବକ ଛିଡାହୋଇଛନ୍ତି । ଯୁବକ ଦେଖିବାକୁ ସୁଶ୍ରୀ; ଶରୀର ହୃଷ୍ଟପୁଷ୍ଟ ଓ ବଳିଷ୍ଠ । ବୟସ ପ୍ରାୟ ୨୫ ବର୍ଷ ହେବ । ସେ କ୍ଳାନ୍ତ ହେଲପରି ଦିଶୁଥିଲେ । ତାଙ୍କ ସର୍ବାଙ୍ଗରୁ ଝାଳ ଥିପି ପଡୁଥିଲା । ତାଙ୍କୁ ସେଠାରେ ଉପସ୍ଥିତ ହେବାର ଦେଖି ମା-ଝିଅ ଟିକିଏ ଘୁଞ୍ଚିଗଲେ । ଯୁବକ ସେମାନଙ୍କୁ ଅଭୟ ଦେଇ କହିଲେ, " ମା, ଡ଼ର ନାହିଁ । ମୁଁ ତୁମ୍ଭର ପୁଅ । ମୁଁ ଥାଉଁ ଥାଉଁ କେହି ତୁମର ଅନିଷ୍ଟ କରି ପାରିବେ ନାହିଁ ।"

ଯୁବକଙ୍କ ଆଶ୍ୱାସନା-ବାକ୍ୟ ଶୁଣି ମା-ଝିଅଙ୍କ ମନରେ ଟିକିଏ ସାହସ ହେଲା । ଶାନ୍ତି ପ୍ରଦୀପାଲୋକରେ ଝଲସିତ ଯୁବକଙ୍କ ଅପୂର୍ବ ରୂପଶ୍ରୀ ଦେଖିଲା; କିନ୍ତୁ ବ୍ରୀଡ଼ାବଶତଃ ଭଲ କରି ଦେଖି ପାରିଲା ନାହିଁ । ତାର ମୁଖ ତଳକୁ ହୋଇଗଲା । ସେ ଯେତେ ଚେଷ୍ଟା କଲେ ସୁଦ୍ଧା ଯୁବକଙ୍କୁ ଏକ ଦୃଷ୍ଟିରେ ଅନାଇ ପାରିଲା ନାହିଁ । ତାର ପୂର୍ଣ୍ଣଚନ୍ଦ୍ରନିଭାନନ ଈଷତ୍ ଲୋହିତ ବର୍ଣ୍ଣ ଧାରଣ କଲା । ଯୁବକ ମଧ୍ୟ ଶାନ୍ତିର ସୁନ୍ଦର ମୁଖ ଦେଖି ମୁଗ୍ଧ ହୋଇଗଲେ । ସେ ରୂପ-ମାଧୁରୀ ଯେତେ ପାନ କଲେ ସୁଦ୍ଧା ତାହାଙ୍କର ଅତୃପ୍ତ ଦର୍ଶନେଚ୍ଛା ପୂର୍ଣ୍ଣ ହେଲନାହିଁ । ଶାନ୍ତିର ମାତା ଯୁବକଙ୍କ

କଥାରେ ସାହସ ପାଇ କହିଲେ, "ବାପା ମୋର, ବୁଢ଼ା ହୋଇଥା । ଈଶ୍ୱର ତୋତେ ବୁଦ୍ଧିବଳ ଦିଅନ୍ତୁ । ତୁ ଆମ ପରି ଦୁଃଖୀ ଅରକ୍ଷିତଙ୍କ ଦୁଃଖ ଦୂର କରିବୁ ।"

ଶାନ୍ତିର ମାତାଙ୍କ କଥା ଶୁଣି, ଯୁବକଙ୍କ ଚକ୍ଷୁ ଆନନ୍ଦାଶ୍ରୁପୂର୍ଣ୍ଣ ହୋଇ ଗଲା । ସେ ଗଦ୍ଗଦ ସ୍ୱରରେ କହିଲେ, "ମା, ଭୟ କରନାହିଁ । ରାଜ୍ୟରେ ରାଜା ଅଛନ୍ତି । ସେ ଏ ଅଶାନ୍ତି ଶୀଘ୍ର ଦୂର କରିବେ । ଆମ ମହାରାଜା ଅଭୟ ସିଂହ ଯେ ସେ ମଣିଷ ନୁହନ୍ତି । ସେ ପ୍ରଜାମାନଙ୍କୁ ପୁଅ ପରି ଦେଖନ୍ତି । ଆମର କଷ୍ଟ ହେଲେ ତାଙ୍କ ମନରେ ମଧ କଷ୍ଟ ହୁଏ ।"

ଶାନ୍ତିର ମାତା କହିଲେ, "ବାପା, ତୁମେ ଆମର କଷ୍ଟ କପରି ଜାଣି ଏଠାକୁ ଆସିଲ ?"

"ମା, ଏହା ମୋର କାର୍ଯ୍ୟ । ରାଜା ମୋତେ ଯାହା କରିବାକୁ କହୁଛନ୍ତି, ମୁଁ ତାହା କରୁଛି ।"

"ବାପା, ଆମେ ଦୁଃଖୀ ଲୋକ । ମଫସଲରେ ପଡ଼ିଛୁଁ । ଆମ ପରି କେତେ ଲୋକ ଏପରି ଭୟରେ ଦିନ କଟାଉଛନ୍ତି ।"

"ମା, ତୁମର ଏ ଦୁଃଖ ଆଉ ବେଶି ଦିନ ରହିବ ନାହିଁ । ଯେ ଆମ ରାଜ୍ୟର ଶତ୍ରୁ, ତାର ବିନାଶ କରିବାକୁ ଆମ୍ଭେମାନେ ଭୟ କରୁନାହିଁ । ଶତ୍ରୁର ମରଣ ନିମନ୍ତେ ଯୁଦ୍ଧରେ ନିପାତହିଁ ଆମ୍ଭମାନଙ୍କର ଏକମାତ୍ର କାମନା ।"

" ତୁମେ କିଏ ?"

"ମୋର ପରିଚୟ ପାଇଲେ ତୁମର କିଛି ଲାଭ ହେବନାହିଁ । ମୁଁ ଜଣେ ସାମାନ୍ୟ କ୍ଷତ୍ରିୟ; ରାଜାଙ୍କ ସେନା-ବିଭାଗରେ କାର୍ଯ୍ୟ କରେଁ । ଆଜି ଏଆଡ଼େ ବୁଲି ବୁଲି ତୁମ କଥା ଶୁଣି ଏଠାକୁ ଆସିଲି ।"

"ବାପା, ତୁମ ନାମ କଣ ?"

"ଅଜିତସିଂହ ।"

ଅଜିତସିଂହଙ୍କ ନାମ ଶୁଣି ମା–ଝିଅ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ସେ "ହୀରାଖଣ୍ଡ ଛତ୍ରପତି ମହାରାଜ" ଅଭୟସିଂହଙ୍କ ପୁତ୍ର । ତାଙ୍କ ଗୌରବ-କାହାଣୀ ସମ୍ବଲପୁର ରାଜ୍ୟର ଘରେ ଘରେ ପ୍ରଚାରିତ ହୋଇ-ଥିଲା । ତାଙ୍କୁ ସେପରି ବେଶରେ ସେଠାରେ ଉପସ୍ଥିତ ହେବାର ଦେଖି ମା-ଝିଅଙ୍କ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେମାନେ ଯାହାଙ୍କ କଥା ପୂର୍ବେ ଶୁଣିଥିଲେ, ଆଜି ତାଙ୍କୁ ସ୍ୱଚକ୍ଷୁରେ ଦେଖିଲେ । ଶାନ୍ତର ଚକ୍ଷୁରୁ ଆନନ୍ଦାଶ୍ରୁ ବହିବାକୁ ଲାଗିଲା । ସେ ଅଜିତସିଂହଙ୍କୁ ଆଖି ପୂରାଇ ଦେଖିବାକୁ ଚେଷ୍ଟା କଲା; କିନ୍ତୁ ତା'ର ସକଳ ଚେଷ୍ଟା ବିଫଳ ହେଲା । ତାର ମା' କହିଲେ, "ଆଜି କି ଶୁଭ ଲଗ୍ନରେ ଆମ୍ଭର ରାତି ପାହିଥିଲା । ନୋହିଲେ କି ଏ ଦରିଦ୍ର–କୁଟୀରରେ ତୁମ୍ଭଙ୍କ ପାଦ–ରଜ ପଡ଼ିଥାନ୍ତା ?"

ଯୁବକ କହିଲେ, "ମା, ସେପରି କଥା କହି ମୋ ମନରେ କଷ୍ଟ ଦିଅ ନାହିଁ । ମୁଁ ରାଜପୁତ୍ର ହେଲେ ସୁଦ୍ଧା ଜଣେ ସାମାନ୍ୟ ପ୍ରଜା । ତୁମ୍ଭ ଏବଂ ମୋ ମଧ୍ୟରେ କିଛି ପ୍ରଭେଦ ନାହିଁ । ପୁଣି ଆଜି ରାଜ୍ୟରେ ଘୋର ଅଶାନ୍ତି । ଏ ଅଶାନ୍ତି ଦୂର କରିବା ସକାଶେ ଆଜି ପ୍ରତ୍ୟେକ ଓଡ଼ିଆର ଜୀବନର ମମତା ଭୁଲି ଶତ୍ରୁର ବିନାଶ କରିବା କର୍ତ୍ତବ୍ୟ ।"

ଅଜିତସିଂହଙ୍କ ତେଜସ୍ୱିନୀ କଥା ଶୁଣି ଶାନ୍ତ ଏବଂ ତା'ର ଜନନୀଙ୍କ ମୁଖରେ ଉତ୍ସାହର ବିମଳ ରେଖା ଝଲସି ଉଠିଲା । ଶାନ୍ତର ମାତା କହିଲେ, "ବାପା, ଆଜି ଜାଣିଲି, ଓଡ଼ିଆ ଜାତିର ସ୍ୱାଧୀନତା ଯାଇନାହିଁ । ଯେତେଦିନ ଯାଏଁ ଓଡ଼ିଶାର ଦକ୍ଷିଣହସ୍ତ ସବଳ ଥିବ, ପୁରୀର ସିଂହାସନ ଟଳାଇବାକୁ କେହି ସମର୍ଥ ହେବେ ନାହିଁ । ବାପା, ପୂର୍ବପୁରୁଷଗଣଙ୍କ

ଗୌରବ ସ୍ମରଣ କରି କାର୍ଯ୍ୟକର । ଯୁଦ୍ଧକ୍ଷେତ୍ରରେ ଶତ୍ରୁଙ୍କୁ ଦେଖାଅ ଯେ ଓଡ଼ିଆ ବୀର ଜାତି ।”

ଏହା କହୁଁ କହୁଁ ଶାନ୍ତିର ମାତାଙ୍କ ମୁଖର ରଙ୍ଗ ପରିବର୍ତ୍ତିତ ହୋଇ-ଗଲା । ତାଙ୍କ ବଳି-ପଳିତ-ପୂର୍ଣ୍ଣ ମୁଖରେ ଅପୂର୍ବ ଉତ୍ସାହର ଜ୍ୟୋତି ଦେଖା ଦେଲା । ଅଜିତସିଂହ କହିଲେ “ମା, ତୁମ୍ଭର ଏ ଉପଦେଶ ଶୁଣି କୃତାର୍ଥ ହେଲି । କ୍ଷତ୍ରିୟ-ରମଣୀର ଉତ୍ସାହ-ବାଣୀ କଦାପି ବିଫଳ ହେବ ନାହିଁ । ମା, ଆଜି ମୁଁ ତୁମ ଘରେ ଆତିଥ୍ୟ ଗ୍ରହଣ କରିବି ।”

ଅଜିତସିଂହଙ୍କୁ ଅତିଥିରୂପେ ପାଇ, ମା-ଝିଅ ଅତିଶୟ ଆହ୍ଲାଦିତ ହେଲେ । ଶାନ୍ତିର ଜନନୀ କହିଲେ, “ଶାନ୍ତି, ଆଜି ବିଦୁର ଘରେ ଶ୍ରୀକୃଷ୍ଣ ଅତିଥି । ଯା, ଖୁଦ ମଣ୍ଡୁଖ ଯାହା ଅଛି, ଅତିଥି ସେବାର ଯୋଗାଡ଼ କରିବୁ ।”

ମାତୃ—ଆଜ୍ଞା ଶିରୋଧାର୍ଯ୍ୟ କରି ଶାନ୍ତି ବିଦାୟ ନେଲା; କିନ୍ତୁ ଯିବା ପୂର୍ବରୁ ଥରେ ଅଜିତସିଂହଙ୍କ ମୁଖକୁ ଅନାଇଲା । ତାଙ୍କୁ ଛାଡ଼ିକରି ଯିବାକୁ ଆଦୌ ମନ ବଳୁ ନଥିଲା । କିନ୍ତୁ ବାଳିକା ପରାଧୀନା । ମାତାଙ୍କ ଆଜ୍ଞା ପାଇ ନିଜ ଇଚ୍ଛା ବିରୁଦ୍ଧରେ ଉକ୍ତ ସ୍ଥାନ ପରିତ୍ୟାଗ କଲା ।

## ଦ୍ୱିତୀୟ ପରିଚ୍ଛେଦ

### ମିଳନ-ସଂଯୋଗ

ଅଜିତସିଂହଙ୍କ ଦର୍ଶନ-ସୁଖରୁ ବଞ୍ଚିତା ହେଲେ ସୁଦ୍ଧା ଆଜି ଶାନ୍ତିର ମନରେ ଭାରି ଆନନ୍ଦ । ଆଜି ସେ ନିଜେ ରୋଷେଇ କରି ଅତିଥି-ସେବା କରିବ; ପରିବେଷଣ କଲାବେଳେ ଆଖି ପୂରାଇ ଅଜିତସିଂହଙ୍କୁ ଦେଖିବ । କିନ୍ତୁ ଅଜିତସିଂହଙ୍କୁ ଦେଖିବାପାଇଁ ତା'ର ମନ ଏତେ ବ୍ୟାକୁଳ କାହିଁକି,

ସେ ଜାଣେ ନାହିଁ । ଶାନ୍ତ ସେ ଯୁଗର ମଫସଲ ବାଳିକା । ସେ କେବଳ ଏତିକି ଜାଣେ ଯେ, ଅଜିତସିଂହଙ୍କୁ ଦେଖିବାକୁ ତାକୁ ଭଲ ଲାଗେ । କିନ୍ତୁ ଏ ବ୍ୟାକୁଳତା, ଏ ଆଗ୍ରହମଧ୍ୟରେ ତାହା ଶରୀରର ପ୍ରତ୍ୟେକ ଶିରାରେ ଯେଉଁ ତଡିତ-ପ୍ରବାହ ପ୍ରବାହିତ ହେଉଥିଲା, ସରଳା ବାଳିକା ତହିଁର କାରଣ କିଛି ବୁଝି ପାରିଲା ନାହିଁ, କିମ୍ବା ବୁଝିବାକୁ ଚେଷ୍ଟା ସୁଦ୍ଧା କଲା ନାହିଁ । ଏ ତଡିତ୍-ପ୍ରବାହ ସେ ଜୀବନରେ କେବେ ଅନୁଭବ କରି ନଥିଲା ; ଏଥରହିଁ ତା'ର ପ୍ରଥମ ଅନୁଭବ ।

ଅଜିତସିଂହ ମଧ୍ୟ ଆଜି ନୂତନ ବେଶରେ ଛିଡ଼ାହେଲେ । ସେ ଆଜି ଶାନ୍ତକୁ ଯେପରି ଚକ୍ଷୁରେ ଦେଖନ୍ତି, ପୂର୍ବେ କେବେ କାହାରିକି ସେପରି ଚକ୍ଷୁରେ ଦେଖି ନଥିଲେ । ଶାନ୍ତର ମାତାଙ୍କ ସଙ୍ଗେ କଥାବାର୍ତ୍ତା କରିବା ସମୟରେ ପ୍ରଦୀପାଲୋକରେ ଶାନ୍ତର ସୁକୋମଳ ମୁଖ ଦେଖି ଶାନ୍ତପ୍ରତି ତାହାଙ୍କ ମନ ଆକୃଷ୍ଟ ହୋଇଥିଲା । ଶାନ୍ତର ସେ ସରଳ ମଧୁବୋଳା ମୁଖଖଣ୍ଡିକ, ତା'ର ସେ ସଲଜ୍ଜ ଦୃଷ୍ଟି ତାଙ୍କ ହୃଦୟରେ ଗୋଟିଏ ନବୀନ ଅନୁଭବର ସୃଷ୍ଟି କଲା । ତାଙ୍କ ଚକ୍ଷୁରେ ଶାନ୍ତର ସୁନ୍ଦର ମୁଖ ଅତିର ସୁନ୍ଦର ଦିଶିଲା । ତାଙ୍କ ଚକ୍ଷୁ-ସମକ୍ଷରୁ ଶାନ୍ତ ତିରୋହିତ ହୁଅନ୍ତେ, ତାଙ୍କ ହୃଦୟ ବ୍ୟାକୁଳ ହୋଇଗଲା । ଶାନ୍ତର ଜନନୀଙ୍କ ସଙ୍ଗେ ପୂର୍ବପରି କଥାବାର୍ତ୍ତା କରିବାକୁ ତାଙ୍କୁ ଆଉ ଭଲ ଲାଗିଲା ନାହିଁ । ତାଙ୍କ ଅଜ୍ଞାତରେ ଶାନ୍ତ ତାଙ୍କ ହୃଦୟକୁ ନେଇ ଚାଲିଗଲା । ଜଡ଼ ଶରୀରଟି ଶାନ୍ତର ଜନନୀଙ୍କ ସଙ୍ଗେ ରହିଲା ।

ଶାନ୍ତର ଭାଇନା ହରିହର ସାଏ ଗ୍ରାମର ଭାଗବତଟୁଙ୍ଗୀରେ ଯାଇ ବସିଥିଲେ । ଅଜିତସିଂହଙ୍କ ଆଗମନ-ବାର୍ତ୍ତା ଶୁଣି ଶୀଘ୍ର ଘରକୁ ଆସିଲେ, ଏବଂ ତାଙ୍କ ସଙ୍ଗେ ରହି ତାଙ୍କ ପରିଚର୍ଯ୍ୟା କରିବାକୁ ଲାଗିଲେ । ଦୁହିଁଙ୍କ ମଧ୍ୟରେ ଅନେକ କଥାବାର୍ତ୍ତା ହେଲା । ପରେ ଭୋଜନର ସମୟ ଉପସ୍ଥିତ ହୁଅନ୍ତେ, ଶାନ୍ତ ପଦପ୍ରକ୍ଷାଳନ ନିମନ୍ତେ ଲୋଟାରେ ଜଳ ଆଣି ଅଜିତସିଂହଙ୍କ

ଆଗରେ ଥୋଇଦେଲା । ହରିହର ସାଏ ଅତିଥିଙ୍କୁ ସଙ୍ଗେ ନେଇ ଭୋଜନ-ଶାଳାକୁ ଗଲେ, ଏବଂ ନାନା ସୁମିଷ୍ଟ କଥାବାର୍ତ୍ତାରେ ପ୍ରବୃତ୍ତ ହୋଇ ଭୋଜନ କରିବାକୁ ଲାଗିଲେ ।

ଆଜ ଶାନ୍ତି ନିଜେ ପରିବେଷିକା ! ତାହା ମନରେ ଭାରି ଆନନ୍ଦ । ସେ ପାଞ୍ଚ ମିନିଟର କାର୍ଯ୍ୟ ମିନିଟକ ମଧ୍ୟରେ କରୁଛି । ବାରମ୍ବାର ଅତିଥିଙ୍କ ନିକଟକୁ ଖାଦ୍ୟଦ୍ରବ୍ୟ ନେଇ ଆସି ତାଙ୍କୁ ଦେଖିବାକୁ ତା'ର ଭାରି ଆଗ୍ରହ । ସେ ନାନା ସୁଖର ସ୍ୱପ୍ନ ମନମଧ୍ୟରେ ଗଢ଼ି ଅଜିତସିଂହଙ୍କ ନିକଟକୁ ଆସେ; କିନ୍ତୁ ତାଙ୍କୁ ଦେଖିଲାକ୍ଷଣି ତା' ମନର ଭାବ ପରିବର୍ତ୍ତିତ ହୋଇଯାଏ । ନାରୀ-ସୁଲଭ ଲଜ୍ଜା ଆସି ତାକୁ ଆକ୍ରମଣ କରେ, ଏବଂ ସେ ହତାଶ ହୋଇ ତଳକୁ ମୁହଁ କରି ପରିବେଷଣ କରେ ।

ଭୋଜନ ସମାପନାନ୍ତେ ଅଜିତସିଂହ ଏବଂ ହରିହର ସାଏ ଶୟନ-କକ୍ଷକୁ ଯାଇ ପଲଙ୍କଉପରେ ବସିଲେ ଏବଂ ଅନେକ ବିଷୟରେ କଥାବାର୍ତ୍ତା କରୁଁ କରୁଁ ଅଜିତସିଂହ କହିଲେ, "ଆଜ ଆମ୍ଭମାନଙ୍କର ସୁଖର ସ୍ୱପ୍ନ ଭାଙ୍ଗି ଯାଇଅଛି । ଶାନ୍ତିମୟ ସମ୍ବଲପୁର ରାଜ୍ୟ ମରହଟ୍ଟା ଦସ୍ୟୁମାନଙ୍କଦ୍ୱାରା ଆକ୍ରାନ୍ତ ହୋଇଅଛି । ଏପରି ଅବସ୍ଥାରେ ଆମ୍ଭମାନଙ୍କର ନିଶ୍ଚିନ୍ତ ହୋଇ ବସି ରହିବା ଉଚିତ ନୁହେ । ଶତ୍ରୁର ଦର୍ପ ଚୂର୍ଣ୍ଣକରି ପୁନର୍ବାର ସମ୍ବଲପୁରରେ ଶାନ୍ତି ସ୍ଥାପନ କରିବା ସକାଶେ ପ୍ରାଣପଣେ ଚେଷ୍ଟା କରିବା ଉଚିତ ।"

ଅଜିତସିଂହଙ୍କ କଥା ଶୁଣି ହରିହର ସାଏ କିଛିକ୍ଷଣ ନୀରବ ରହିଲେ । ପରେ ମନମଧ୍ୟରେ କଣ ଭାବି କହିଲେ, "ମରହଟ୍ଟାମାନଙ୍କ ଏପରି ଆଚରଣ ଦେଖି ମୁଁ ବଡ଼ ଆଶ୍ଚର୍ଯ୍ୟାନ୍ୱିତ ହେଉଛି । ଏମାନଙ୍କୁ ପୂର୍ବେ ମୁଁ ଭକ୍ତି କରୁଥିଲି । ମୁଁ ଭାବିଥିଲି ଯେ, ଏମାନେ ପତନୋନ୍ମୁଖ ମୋଗଲ-ସାମ୍ରାଜ୍ୟର ଧ୍ୱଂସ ସାଧନ କରି ଏ ପୁଣ୍ୟଭୂମି ଭାରତବର୍ଷରେ ହିନ୍ଦୁସାମ୍ରାଜ୍ୟ

ସଂସ୍ଥାପନ କରିବେ; କିନ୍ତୁ ଏମାନେ ରାଜ୍ୟ-ସଂସ୍ଥାପନର ମୂଳମନ୍ତ୍ର ଜାଣନ୍ତି ନାହିଁ । କେବଳ ତରବାରି ସାହାଯ୍ୟରେ ଏ ମହତ୍ତ୍ୱ କାର୍ଯ୍ୟ ସାଧିତ ହୋଇ ନ ପାରେ ।”

ଅଜିତସିଂହ କହିଲେ, “ଭାଇ, ସେ ଦିନ ଗଲାଣି । ଆଉ ସେ ଶିବାଜି ନାହାନ୍ତି । ଭାରତର ଭାଗ୍ୟ-ଚକ୍ର ପୁଣି ଭିନ୍ନ ଦିଗରେ ବିଘୂର୍ଣ୍ଣିତ ହେବାକୁ ବସିଛି । ବିନାଶ-କାଳେ ମନୁଷ୍ୟର ବିପରୀତ ବୁଦ୍ଧି ହୋଇଥାଏ । ଆଜି ମରହଟ୍ଟାମାନେ ଜୟ-ଗର୍ବରେ ମତ୍ତ । ସେମାନଙ୍କୁ ସ୍ୱର୍ଗ-ମର୍ତ୍ତ୍ୟ-ପାତାଳ ତିନିପୁର ଦିଶୁନାହିଁ । ସେଥିପାଇଁ ଆମ୍ଭମାନଙ୍କୁ ତୃଣବତ୍ ଜ୍ଞାନ କରି ଆମ୍ଭମାନଙ୍କ ମନରେ କଷ୍ଟ ଦେବାକୁ ବସିଛନ୍ତି । କିନ୍ତୁ ଓଡ଼ିଆମାନେ କାପୁରୁଷ ନୁହନ୍ତି । ସେମାନେ ସ୍ୱୀୟ ପ୍ରାଣର ବିନିମୟରେ ଶତ୍ରୁକୁ ସମୁଚିତ ଶାସ୍ତି ଦେଇ ପାରନ୍ତି ।”

“ମରହଟ୍ଟାମାନେ ଆମ୍ଭମାନଙ୍କର ଶତ୍ରୁ ହେଲେ ସୁଦ୍ଧା ଭାରତବାସୀ । ଭାଇ ଭାଇ ମଧ୍ୟରେ ବିବାଦ ହୋଇ ସ୍ୱର୍ଣ୍ଣପ୍ରସୂ ଭାରତ-ଭୂମିର ସର୍ବନାଶ ହୋଇଛି । ମରହଟ୍ଟାମାନେ ଅତ୍ୟାଚାରୀ ହେଲେ ସୁଦ୍ଧା ଭାରତର ସ୍ୱାଧୀନତା ସଂସ୍ଥାପନ-ବ୍ରତରେ ବ୍ରତୀ । ସେମାନଙ୍କ ଏ ମହାବ୍ରତରେ ବାଧା ଦେବା ବୁଦ୍ଧିମାନର କାର୍ଯ୍ୟ ନୁହେ ।”

“କିନ୍ତୁ ତାହା ବୋଲି ଏପରି ଅତ୍ୟାଚାରୀ ଜାତିର ଅଧୀନତା ସ୍ୱୀକାର କରିବା ବୁଦ୍ଧିମାନର କାର୍ଯ୍ୟ ନୁହେ । ଓଡ଼ିଆମାନେ ଭୀରୁ, କାପୁରୁଷ ନୁହନ୍ତି । ଯଦି ସେମାନେ ଯୁଦ୍ଧରେ ଓଡ଼ିଶା ଜୟ କରିବାକୁ ଇଚ୍ଛା କରନ୍ତି, ତାହାହେଲେ ସେମାନେ ଦେଖିବେ ଯେ, ଓଡ଼ିଆ ବୀରଜାତି, ହିନ୍ଦୁ ଜାତିର ଗୋଟିଏ ପ୍ରଧାନ ଅଙ୍ଗ ।”

“ତାହା ନ କରି ସେମାନଙ୍କୁ ଅତ୍ୟାଚାର-କାର୍ଯ୍ୟରୁ ନିବୃତ୍ତ କଲେ ଭଲ ହୁଅନ୍ତା । ସେମାନଙ୍କ ହସ୍ତରେ ଆମ୍ଭର ରାଜ୍ୟ ସମର୍ପଣ କରି,

ସେମାନଙ୍କ ଅଧୀନତା ସ୍ୱୀକାର କରି, ସେମାନଙ୍କ ପବିତ୍ର ବ୍ରତରେ ଯୋଗ ଦେବା ଉଚିତ । ଏ ଅଧୀନତା-ସ୍ୱୀକାର କାପୁରୁଷତାର ଲକ୍ଷଣ ନୁହେ । ଯଦି ଭାରତବର୍ଷର ବିଭିନ୍ନ ଅଂଶଗୁଡିକ ଏକାକାର ହୋଇ ଅନନ୍ତ ମହାସମୁଦ୍ରର ଆକାର ଧାରଣ କରନ୍ତି, ତାହାହେଲେ ହିନ୍ଦୁଜାତିର ସ୍ୱାଧୀନତା ଅପହରଣ କରିବା ସମଗ୍ର ପୃଥିବୀର ସାଧ୍ୟାୟତ୍ତ ନୁହେ ।"

"କାହିଁ—ମରହଟ୍ଟାମାନେ ତ ସେ କାର୍ଯ୍ୟ କରୁ ନାହାନ୍ତି ! ସେମାନେ ଭାବନ୍ତି ଯେ, ସେମାନେ ଏକା ଭାରତର ଅଧୀଶ୍ୱର ହେବେ, ଏବଂ ଅନ୍ୟ ଜାତିଗୁଡିକ ସେମାନଙ୍କ ପାଦସେବା କରିବେ । କିନ୍ତୁ ତାହା କେବେ ହୋଇ ନ ପାରେ । କୌଣସି ଗୋଟିଏ ଜାତି ଭାରତର ଅନ୍ୟାନ୍ୟ ଜାତିଗୁଡିକୁ ପଦଦଳିତ କରି ଭାରତରେ ସ୍ୱାଧୀନ ରାଜ୍ୟ ସଂସ୍ଥାପନ କରି ନ ପାରେ ।"

"ଭାରତର ମଙ୍ଗଳ ସକାଶେ ତାହା କରିବାକୁ ହେବ । ବରଂ ନିଜର କ୍ଷତି ହେଉ; କିନ୍ତୁ ଜନ୍ମଭୂମିର ସୁଖ ହେଉ ।"

"ତୁମ୍ଭର ମତ ସମର୍ଥନ କରିବାକୁ ଗଲେ ସ୍ୱୀକାର କରିବାକୁ ହେବ ଯେ, ଭାରତର ସ୍ୱାଧୀନତା ଯାଇନାହିଁ । ଭାରତବାସୀ ଆଜି ଆମ୍ଭମାନଙ୍କ ସମ୍ରାଟ୍ । ଦେଶର କାର୍ଯ୍ୟରେ ଜାତିଧର୍ମର ବିଚାର ନଥାଏ । ମୋଗଲମାନେ ଭିନ୍ନଧର୍ମାବଲମ୍ବୀ ହେଲେ ସୁଦ୍ଧା ଭାରତବାସୀ । ଆଜି ମୋଗଲମାନଙ୍କ ଅଧୀନରେ ଥାଇ ଭାରତର ଯେ ଦଶା, ମରହଟ୍ଟାମାନଙ୍କ ଅଧୀନରେ ରହିଲେ ସୁଦ୍ଧା ସେହି ଦଶା ହେବ ।"

ଏଥର ଅଜିତସିଂହଙ୍କ କଥା ଶୁଣି ହରିହର ସାଏ ନିରୁତ୍ତର ହେଲେ । ତାହାଙ୍କର ସନ୍ଦେହ ବିଦୂରିତ ହେଲା । ସେ କହିଲେ, "ତାହାହେଲେ ଯୁଦ୍ଧହିଁ ସ୍ଥିର ହେଲା । ବିନା ଯୁଦ୍ଧରେ ମରହଟ୍ଟାମାନଙ୍କ ସଙ୍ଗେ ମିଳିତ ହେବା ଅସମ୍ଭବ । ଆଜି ମୋର ସଂଶୟ ଦୂର ହେଲା । ଆଜିଠାରୁ ମୁଁ ମରହଟ୍ଟାମାନଙ୍କ

ଶତ୍ରୁ ହେଲ । ଏ ଦେହରେ ଟୋପାଏ ରକ୍ତ ଥିବାଯାଏ ସେମାନେ ମୋର ମାତୃଭୂମିକୁ କଦାପି ପଦଦଳିତ କରିପାରିବେ ନାହିଁ ।”

ଅଜିତସିଂହଙ୍କ ପରିଶ୍ରମ ସଫଳ ହେଲା । ସେ ଯେଉଁ କାର୍ଯ୍ୟ ନିମନ୍ତେ ସେଠାକୁ ଆସିଥିଲେ, ତହିଁରେ କୃତକାର୍ଯ୍ୟ ହେଲେ । ସେ ଆନନ୍ଦିତ ହୋଇ କହିଲେ, “ଏହିଟା ବୀରପୁରୁଷର, ସ୍ୱଦେଶ-ପ୍ରେମିକର ଉତ୍ତର ! ଭାଇ, ଆମ୍ଭମାନଙ୍କ ରାଜ୍ୟର ଅବସ୍ଥା କିପରି ଶୋଚନୀୟ ହୋଇ ଗଲାଣି ! ଗ୍ରାମେ ଗ୍ରାମେ ହାହାକାର ! ସର୍ବତ୍ର ଦୁର୍ଭିକ୍ଷର କରାଳ ମୂର୍ତ୍ତି ! ଲୋକାରଣ୍ୟ ଗ୍ରାମଗୁଡିକ ପରିତ୍ୟକ୍ତ ! ଯଦି ଆମ୍ଭେମାନେ ମାତୃଭୂମିର ପ୍ରକୃତ ସନ୍ତାନ ହୋଇଥାଉଁ, ତାହାହେଲେ ପୁନର୍ବାର ଜନ୍ମଭୂମିକୁ ଶସ୍ୟ-ଶ୍ୟାମଳା କରିବାକୁ ହେବ । କିନ୍ତୁ ଏହା ଜଣେ କିମ୍ବା ଦୁଇଜଣର କାର୍ଯ୍ୟ ନୁହେ । ରାଜ୍ୟଯାକ ଲୋକଙ୍କୁ ଏକତ୍ରିତ କରିବାକୁ ହେବ; ସୁପ୍ତ ପ୍ରାଣରେ ଜାଗରଣ-ମନ୍ତ୍ର ପଢ଼ିବାକୁ ହେବ; ଓଡିଆ ଜାତି ନବୀନ ଉତ୍ସାହରେ ମାତି ଉଠୁ । ଦେଶପାଇଁ ପ୍ରାଣ-ବଳି ଦେବାକୁ ସଭିଏ ପ୍ରସ୍ତୁତ ହୁଅନ୍ତୁ । ଏ ମହାସମୁଦ୍ରର ଭୀଷଣ ତରଙ୍ଗାଘାତରେ ମରହଟ୍ଟାମାନେ କୋଟି ସଂଖ୍ୟକ ହେଲେ ସୁଦ୍ଧା ବିଚୂର୍ଣ୍ଣିତ ହେବେ ।”

ଏହା କହୁଁ କହୁଁ ଅଜିତସିଂହଙ୍କ ମୁଖ କ୍ରୋଧରେ ଲାଲ ହୋଇ ଗଲା । ତାହାଙ୍କ ନାଶାପୁଟଦ୍ୱୟ ଉତ୍ସାହର ବେଗରେ ସ୍ଫୁରିତ ହେବାକୁ ଲାଗିଲା । ହରିହର ସାଏ ତାଙ୍କ ଉତ୍ସାହ-ବାକ୍ୟରେ ମାତିଉଠିଲେ । ସେ ଅଜିତସିଂହଙ୍କୁ ଗାଢ଼ ଆଲିଙ୍ଗନ-ପାଶରେ ଆବଦ୍ଧ କରି କହିଲେ, “ଆଜି ଆପଣ ମୋର ମୋହ-ନିଦ୍ରା ଭାଙ୍ଗିଛନ୍ତି । ସମ୍ମୁଖରେ ବିପଦ ଥାଉଁ ଥାଉଁ ମୁଁ ଘରେ ନିଶ୍ଚିନ୍ତ ହୋଇ ବସି ରହିଥିଲି । କିନ୍ତୁ ଆପଣଙ୍କ ମନ୍ତ୍ର-ବଳରେ ମୋର ଜଡ଼ତା ଅପସାରିତ ହୋଇଅଛି ।”

ଆନନ୍ଦରେ ଅଜିତସିଂହ ଏବଂ ହରିହର ସାଏଙ୍କ ଚକ୍ଷୁରୁ ଲୋତକ ବହିବାକୁ ଲାଗିଲା । ଦୁହେଁ ଦୁହିଙ୍କୁ ଆଲିଙ୍ଗନ କରି ସେହିକ୍ଷଣି ସମ୍ବଲପୁର-ଦୁର୍ଗାଭିମୁଖରେ ଯିବାର ପ୍ରସ୍ତାବ କଲେ, ଏବଂ ଶାନ୍ତି ଓ ତାହାର ଜନନୀଙ୍କଠାରୁ ବିଦାୟ ନେଇ ସେହି ଗାଢ଼-ଅନ୍ଧକାରମୟ ରଜନୀରେ ପ୍ରସ୍ଥାନ କଲେ ।

# ତୃତୀୟ ପରିଚ୍ଛେଦ

## ବାଳିକା

ସମ୍ବଲପୁରର ଉତ୍ତର-ତୀରରେ (୧) ରକ୍ଷୋଲ ଗ୍ରାମ । ସ୍ୱଚ୍ଛ-ସଲିଳା ଇବନଦୀ ସେହି ଗ୍ରାମର ଚରଣ ଧୌତକରି ପ୍ରବାହିତା । ବୃକ୍ଷ-ଲତା-ପରିବେଷ୍ଟିତା ରକ୍ଷୋଲ କାନନ-ଲକ୍ଷ୍ମୀଙ୍କ କ୍ରୋଡ଼ାବସ୍ଥିତ ଗୋଟିଏ ଅମୂଲ୍ୟ ରତ୍ନ ।

ଶାନ୍ତିର ଗୃହ ରକ୍ଷୋଲରେ । ତାହାର ପିତା ଜଣେ ଉଚ୍ଚ-ବଂଶ-ସମ୍ଭୂତ କୁଳୀନ କ୍ଷତ୍ରିୟ ଥିଲେ । ସେ ଦକ୍ଷତାସହକାରେ ସମ୍ବଲପୁର ରାଜ୍ୟର ସେନାପତିକାର୍ଯ୍ୟ ଚଳାଇଥିଲେ । ତାଙ୍କ ମରଣାନ୍ତେ ତାଙ୍କ ପୁତ୍ର ହରିହର ସାଏ ସେନା-ବିଭାଗରେ ପ୍ରବେଶ କଲେ, ଏବଂ ସ୍ୱୀୟ ରଣ-କୌଶଳ-ବଳରେ ଶୀଘ୍ର ଉଚ୍ଚପଦ ପ୍ରାପ୍ତ ହୋଇଥିଲେ । କିନ୍ତୁ ଯେତେବେଳେ ମରହଟ୍ଟାମାନେ ସମ୍ବଲପୁର ଆକ୍ରମଣ କରିବାକୁ ଆସନ୍ତି, ସେ ସେନା-ବିଭାଗରୁ ବିଦାୟ ନେଇ ଆସି ରକ୍ଷୋଲରେ ରହିଲେ ।

---

ସମ୍ବଲପୁର ଦୁଇଗୋଟି ପ୍ରାକୃତିକ ବିଭାଗରେ ବିଭକ୍ତ — ଉତ୍ତର-ତୀର ଓ ଦକ୍ଷିଣ-ତୀର । ମହାନଦୀର ବାମତୀରବର୍ତ୍ତୀ ପ୍ରଦେଶ ଉତ୍ତରତୀର ନାମରେ ପରିଚିତ ।

ଶାନ୍ତ ଦୁଃଖିନୀ ମାତା, ଭାଇ ଏବଂ ଭାଉଜ ସଙ୍ଗେ ମନସୁଖରେ ସ୍ୱୀୟ କୁଟୀରରେ ଥିଲା; କିନ୍ତୁ ଯେଉଁ ଦିନ ଅଜିତସିଂହଙ୍କ ସଙ୍ଗେ ତାହାର ସାକ୍ଷାତ୍ ହେଲା, ସେହି ଦିନଠାରୁ ତାହାର ମନର ଗତି ଭିନ୍ନଦିଗରେ ପ୍ରଧାବିତ ହେଲା । ଶାନ୍ତ ଆଜିଯାଏ ସରଳା ବାଳିକା ଥିଲା; କିନ୍ତୁ ଅଜିତ-ସିଂହଙ୍କୁ ଦେଖିବା ଦିନରୁ ସେ ନିଜ ଲଘୁ ହୃଦୟରେ ଗୁରୁଭାର ଅନୁଭବ କରିବାକୁ ଲାଗିଲା । ତାହାର ବାଲ-ସୁଲଭ ସରଳତା କେଉଁଆଡ଼େ ଉଭେଇ ଗଲା । ସେ ପ୍ରେମ-ମନ୍ତ୍ରରେ ଦୀକ୍ଷିତ ହେଲା ।

ପ୍ରେମର ପଥ ଜଟିଳ । ପ୍ରେମିକ-ପ୍ରେମିକା ଅବିଚ୍ଛିନ୍ନ ସୁଖ ଭୋଗ କରିପାରନ୍ତି ନାହିଁ । ସେମାନଙ୍କ ଜୀବନରେ ନାନା ଦୁଃଖର ଅଭିନୟ ହୋଇଥାଏ । କିନ୍ତୁ ଏ ଦୁଃଖ ମଧ୍ୟରେ ସେମାନେ ଯେଉଁ ସୁଖାନୁଭବ କରନ୍ତି, ତାହା ଯେ ପ୍ରକୃତ ପ୍ରେମିକ ନୁହେ, ସେ କଦାପି ବୁଝି ନପାରେ !

ଆଜି ଶାନ୍ତର ସେହି ଦଶା । ସେ ହଠାତ୍ ପ୍ରେମ-ସାଗରରେ ନିଜ କ୍ଷୁଦ୍ର ତରୀକୁ ଭସାଇ ଦେଇଅଛି । କିନ୍ତୁ ଯେ ତା'ର ଏ ତରୀର କର୍ଣ୍ଣଧାର ହୁଅନ୍ତେ, ସେ ଅଧୁନା ନିକଟରେ ନାହାନ୍ତି । ତାଙ୍କ ଅଭାବରେ ଦୁଃଖିନୀ ଶାନ୍ତ ସେହି ସାଗରର ତରଙ୍ଗରେ ଅସହାୟ ଭାବରେ ଭାସୁଅଛି ।

ଶାନ୍ତ ପୂର୍ବେ ଅଜିତସିଂହଙ୍କୁ କେବେ ଦେଖି ନ ଥିଲା; କିନ୍ତୁ ଯେଉଁ ଦିନ ତାଙ୍କୁ ପ୍ରଥମକରି ଦେଖିଲା, ସେହିଦିନ ସେ ତାଙ୍କଠାରେ ନିଜ କ୍ଷୁଦ୍ର ହୃଦୟଖଣ୍ଡିକ ବିକ୍ରୟ କରିଦେଲା । ତାହାର ସେ ହୃଦୟକୁ ସଙ୍ଗରେ ନେଇ ଅଜିତସିଂହ ସ୍ୱଦେଶର ମାନରକ୍ଷା କରିବାସକାଶେ ଯୁଦ୍ଧକ୍ଷେତ୍ରକୁ ଯାଇଛନ୍ତି । ଯେତେବେଳେ ଶାନ୍ତ ଭାବେ ଯେ, ତା' ହୃଦୟର ଦେବତା ଯୁଦ୍ଧ-କ୍ଷେତ୍ରରେ ଅଛନ୍ତି, ଶତ୍ରୁର ଦର୍ପ ଚୂର୍ଣ୍ଣ କରିବାସକାଶେ ବିପୁଳ ଆୟୋଜନ କରୁଛନ୍ତି, ତାହାର ହୃଦୟ ପୁଲକରେ ନାଚିଉଠେ । ସେ ନାନା ସୁଖର ସ୍ୱପ୍ନ କଳ୍ପନା କରି ମନେ ମନେ ମା' ସମଲେଶ୍ୱରୀଙ୍କୁ

ପ୍ରାର୍ଥନାକରେ, " ମା, ମୋର ସ୍ୱାମିଙ୍କୁ ବଳ ଦିଅ । ସେ ଦେଶର ମାନ ରକ୍ଷାକରି ଯଶସ୍ୱୀ ହୁଅନ୍ତୁ ।" ପରେ ଯେତେବେଳେ ବିରହ-ଯନ୍ତ୍ରଣା ତା'ର ହୃଦୟକୁ ଅବଶ କରେ, ସେ ଶୋକରେ ଅଧୀର ହୋଇଯାଏ । ଅଜିତସିଂହଙ୍କୁ ଦେଖିବାପାଇଁ ମନ ବ୍ୟାକୁଳ ହୁଏ ।

କିନ୍ତୁ ଅଜିତସିଂହ ତାକୁ ଦେଖା ଦେବେ କି ? ସେ ରାଜପୁତ୍ର । ଦୁଃଖିନୀ ଶାନ୍ତିର କଥା ତାଙ୍କ ମନେ ପଡ଼ିବ କି ? ତାଙ୍କ ବୀର-ମୂର୍ତ୍ତିକୁ ଶାନ୍ତି ଏକାଗ୍ରଚିତ୍ତରେ ପୂଜାକରୁଛି ବୋଲି ସେ ଜାଣି ପାରିବେ କି ? ଯଦି ସେ ଶାନ୍ତିକୁ ଘୃଣା କରନ୍ତି, ଶାନ୍ତିକି ପାଶୋରିଯାନ୍ତି, ତାହାହେଲେ ତାହାର ଦଶା କିଣ ହେବ ? ଏହି ଭାବନା ମଧ୍ୟେ ମଧ୍ୟେ ଶାନ୍ତିର ମନରେ କଷ୍ଟ ଦିଏ । କିନ୍ତୁ ପରେ ସେ ଭାବେ, ତା'ର ହୃଦୟେଶ୍ୱର ନିର୍ଦ୍ଦୟ ନୁହନ୍ତି । ସେ ରାଜବଂଶ-ଜାତ ହେଲେ ସୁଦ୍ଧା ଉଦାର ଓ ମହାନ୍ । ଶାନ୍ତିର କ୍ଷୁଦ୍ର ସ୍ମୃତିକୁ ସେ କଦାପି ଭୁଲିବେନାହିଁ ।

ଶାନ୍ତିର ଏ ଭାବନା, ଏ ବିରହ-ଚିନ୍ତା କେବଳ ଜଣେ ଲକ୍ଷ୍ୟ କରିଥିଲା । ସେ ତା' ଭଉଜ ଗୁଞ୍ଜମଣି । ଶାନ୍ତିକୁ ଏପରି ଚିନ୍ତା କରୁଥିବାର ଦେଖି ତା' ମନରେ ଦୟା ହେଲା । ସେ ଶାନ୍ତିର ମନର ଭାବ ବୁଝି-ପାରିଲା । ଦିନେ ସେ ଶାନ୍ତିନିକଟକୁ ଯାଇ କହିଲା, " ଶାନ୍ତି, ଆଜିକାଲି ତୁମ ମନରେ ସୁଖ ନାହିଁ କାହିଁକି ? ତୁମେ ସବୁବେଳେ ଏକୁଟିଆ ବସି କିଣ ଭାବୁଛ ? ଆହା, ସୁନାମୁହଁଟି କଳା ପଡ଼ିଗଲାଣି ! ମୋ' ରାଣ ତୁମର କିଣ ହେଲା, କହ ।" ଶାନ୍ତି ଛନ୍ଦକପଟ କିଛି ଜାଣେନାହିଁ । ବନ୍ଧୁର ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଧରା ପଡ଼ିଲା ।

ଗୁଞ୍ଜମଣି ଶାଶୁଙ୍କ ନିକଟକୁ ଯାଇ ଶାନ୍ତିର ଦୁଃଖ-କାହାଣୀ କହିଲା । ଗୁଞ୍ଜମଣି ମୁଖରୁ ସେ ଶାନ୍ତିର ହୃଦୟ ବିନୟ ବିଷୟ ଶୁଣି ମନେ ମନେ ସୁଖୀ ହେଲେ । ଶାନ୍ତି ରାଜରାଜେଶ୍ୱରୀ ହେବ, ଏଥିରୁ ବଳି ସୁଖର କଥା ଆଉ କିଣ ହୋଇପାରେ ?

ପୂର୍ବେ ଗୁଞ୍ଜମଣି ଶାନ୍ତକୁ ଶୁଭ ଦୃଷ୍ଟିରେ ଦେଖୁ ନ ଥିଲା; କିନ୍ତୁ ଯେଉଁ ଦିନ ସେ ଶାନ୍ତର ମନର ଭାବ ବୁଝିପାରିଲା, ସେହି ଦିନଠାରୁ ନଣନ୍ଦ-ଭାଉଜଙ୍କର ଭିତର ମନ ମିଳିଲା । ହୃଦୟ ସମଭାବାପନ୍ନ ନ ହେଲେ ସମବେଦନାର ଉଦ୍ରେକ ଅସମ୍ଭବ । ଗୁଞ୍ଜମଣି ନିଜେ ଯେ ସ୍ୱାମି-ବିରହରେ ଅଧୀର ! ଏଥିପାଇଁ ଦୁହେଁ ଏକାଠି ବସି ଗଳ୍ପ କରନ୍ତି, ଏକାଠି ବସି କାନ୍ଦନ୍ତି । ଶାନ୍ତର ମନକୁ ଭୁଲାଇବା ସକାଶେ ଗୁଞ୍ଜମଣି ଅନେକ ଚେଷ୍ଟା କରେ—ନାନା ବୀରତ୍ୱ-କାହାଣୀ କହେ । ଶାନ୍ତ ବୀରମାନଙ୍କ ସ୍ୱାର୍ଥତ୍ୟାଗ ବିଷୟ ଶୁଣି ଅହ୍ଲାଦିତ ହୁଏ ଏବଂ ମନେ ମନେ ଅଜିତସିଂହଙ୍କ ସ୍ୱାର୍ଥତ୍ୟାଗ କାମନା କରେ ।

ଏହିପରି ଅନେକ ଦିନ ଅତୀତ ହେଲା; କିନ୍ତୁ ଅଜିତସିଂହ ଶାନ୍ତ ନିକଟକୁ ଆସିଲେ ନାହିଁ । ଗୁଞ୍ଜମଣିର ମୁଖରୁ ଶାନ୍ତ ଶୁଣିଥିଲା ଯେ ମରହଟ୍ଟାମାନେ ଓଡିଆମାନଙ୍କ କର୍ତ୍ତୃକ ଦୁଇଥର ପରାଜିତ ହେଲେ । ସେଥି ମଧ୍ୟରୁ ଗୋଟିଏ ଯୁଦ୍ଧରେ ସ୍ୱୟଂ ଅଭୟସିଂହ (୧) ସେନାପତି ଥିଲେ ଏବଂ ଅପର ଯୁଦ୍ଧରେ ଅଜିତସିଂହ ସେନାପତି ଥିଲେ । ପ୍ରାଣକାନ୍ତଙ୍କ ବିଜୟ-ବାର୍ତ୍ତା ଶୁଣି ଶାନ୍ତ ପୁଲକିତ ହେଲା । ତାହାର ପତିଦର୍ଶନେଚ୍ଛା ବଳବତୀ ହେଲା । କିନ୍ତୁ ଅଜିତସିଂହ ଯୁଦ୍ଧରେ ଜୟଲାଭ କଲେ ସୁଦ୍ଧା ଶାନ୍ତ ନିକଟକୁ ଆସିଲେ ନାହିଁ, ତା' ଜୀବନର ପ୍ରଧାନ ସ୍ପୃହା ମେଣ୍ଟାଇଲେ ନାହିଁ । ଶାନ୍ତ ନୀରବରେ କ୍ରନ୍ଦନ କରିବାକୁ ଲାଗିଲା । ତାହାର କ୍ଷୁଦ୍ର ହୃଦୟଖଣ୍ଡିକ ଦୁଃଖରେ ଅବସନ୍ନ ହୋଇଗଲା ।

(୧) ସମ୍ବଲପୁରର ନୃପତି ବିଶେଷ । ଏହାଙ୍କ ସମୟରେ ମରହଟ୍ଟାମାନେ ଓଡ଼ିଆମାନଙ୍କ ଦ୍ୱାରା ପରାଜିତ ହୋଇଥିଲେ । ବିସ୍ତୃତ ବିବରଣ ଇତିହାସରେ ଅନୁସନ୍ଧେୟ ।

# ଚତୁର୍ଥ ପରିଚ୍ଛେଦ

## ପୂର୍ଣ୍ଣିପ୍ରଭା

ମରହଟ୍ଟାମାନେ ଯୁଦ୍ଧରେ ପରାଜିତ ହେଲେ । ସେମାନଙ୍କ ଦର୍ପ ଏକାବେଳକେ ଚୂର୍ଣ୍ଣ ହୋଇଗଲା । ମା' ସମଲେଶ୍ୱରୀଙ୍କ ବିଜୟ-ପତାକା ବାରପାହାଡ଼ର ଶିଖର-ଦେଶରେ ସଂସ୍ଥାପିତ ହେଲା । ଦେଶରେ ଆନନ୍ଦର ସ୍ରୋତ ପ୍ରବାହିତ ହେବାକୁ ଲାଗିଲା । କିନ୍ତୁ ଦୁଃଖିନୀ ଶାନ୍ତିର ଦୁଃଖ ମେଣ୍ଟିଲା ନାହିଁ । ଦିନକୁ ଦିନ ସେ କ୍ଷୀଣ ହେବାକୁ ଲାଗିଲା ।

ଗୁଞ୍ଜମଣି ନଣନ୍ଦର ଦୁଃଖ ଦେଖି ସହି ପାରିଲାନାହିଁ । ତା' ମନରେ ସୁଦ୍ଧା କଷ୍ଟ । ହରିହର ସାଏ ଯୁଦ୍ଧ-କ୍ଷେତ୍ରରେ ଜୟଲାଭ କରି ସୁଦ୍ଧା ଫେରିଲେ ନାହିଁ । ସେମାନଙ୍କ ଆଗମନରେ ବିଳମ୍ବ ହେବାରୁ ଦୁଇ ନଣନ୍ଦ-ଭାଉଜଙ୍କ ମନରେ ମର୍ମାନ୍ତିକ କଷ୍ଟ ହେଲା । କିନ୍ତୁ ଗୁଞ୍ଜମଣି ଶାନ୍ତିଠାରୁ ବୟସରେ ବଡ଼ । ସେ ଏଥିପୂର୍ବେ ଅନେକ ଥର ଏପରି ବିରହ-ବେଦନା ସହିଥିଲା । ବୀର-ପତ୍ନୀର ଭାଗ୍ୟରେ ବିଧାତା ଏହି କଷ୍ଟ ଲେଖିଛନ୍ତି—ବୀର-ରମଣୀ ଅକାତରରେ ସେ କଷ୍ଟ ସହିପାରେ । ତାହାର ସ୍ୱାମୀ ଦେଶ-ସେବାରେ ନିଯୁକ୍ତ ବୋଲି ସେ ମନରେ ଗର୍ବ ଅନୁଭବ କରେ ।

ଶାନ୍ତିକୁ ସୁଖୀ କରିବାପାଇଁ ଗୁଞ୍ଜମଣି ଅନେକ ଚେଷ୍ଟାକରେ, ତାକୁ ଅନେକ ସାନ୍ତ୍ୱନା ଦିଏ; କିନ୍ତୁ ଶାନ୍ତିର ମନ ମାନେ ନାହିଁ । ସେ ନିଜେ ନିଜ ମନକୁ ପ୍ରବୋଧିତ କରିବାକୁ ଚେଷ୍ଟା କରେ ମଧ୍ୟ; କିନ୍ତୁ ତାହାର ସକଳ ଚେଷ୍ଟା ବିଫଳ ହୁଏ । ଶାନ୍ତି ପୂର୍ବେ କେବେ ଏପରି କଷ୍ଟ ପାଇ ନ ଥିଲା; କିନ୍ତୁ ଯେଉଁଦିନ ସେ ପ୍ରେମ-ପଥର ପଥିକ ହେଲା, ସେହିଦିନ ତା'ର କଷ୍ଟର ସୃଷ୍ଟି ହେଲା । ବିଧାତା ପବିତ୍ର ପ୍ରେମର-ପଥକୁ କାହିଁକି କଣ୍ଟକିତ କରନ୍ତି, କିଏ କହିପାରେ ?

ଦିନେ ଶାନ୍ତ ଓ ଗୁଞ୍ଜମଣି ମନର ବେଦନା ସମ୍ଭାଳି ନ ପାରି ଘର-ବଗିଚ୍ଚାରେ ଯାଇ ବସିଲେ । ଘୋର ତମୋମୟୀ ନିଶୀଥିନୀ । ଚନ୍ଦ୍ର-ବିହୀନ ନକ୍ଷତ୍ରଗୁଡ଼ିକ ଆନନ୍ଦିତ ହୋଇ ଆକାଶରେ ଝଲସୁଛନ୍ତି । ସେମାନଙ୍କ ଆଲୋକ ଉଦ୍ୟାନର ବୃକ୍ଷଗୁଡ଼ିକର କଷ୍ଟ ଦୂର କରିପାରୁ ନାହିଁ । ପ୍ରସ୍ଫୁଟନୋନ୍ମୁଖ ଫୁଲଗୁଡ଼ିକ ଚନ୍ଦ୍ରର ଅଭାବରେ ଅସହ୍ୟ ଯନ୍ତ୍ରଣା ଭୋଗ କରୁଛନ୍ତି । ଶାନ୍ତ ଓ ଗୁଞ୍ଜମଣି ଉଦ୍ୟାନକୁ ଯାଇ ଗୋଟିଏ ବୃକ୍ଷତଳେ ଉପବେଶନ କଲେ । ବୃକ୍ଷତଳେ ବସି ଦୁହେଁ ଦୁହିଁଙ୍କୁ ନିଜ ନିଜ ହୃଦୟର ଦ୍ୱାର ଉନ୍ମୁକ୍ତ କରି ଦେଖାଇଲେ । ଦୁଃଖରେ, କ୍ଷୋଭରେ ଉଭୟଙ୍କ ଚକ୍ଷୁ ଲୋତକାର୍ଦ୍ର ହେଲା । ପରେ ଉଦ୍ୟାନର ମଲ୍ଲିକା ଉପରେ ସେମାନଙ୍କ ଦୃଷ୍ଟି ପଡ଼ିଲା । ସେମାନେ ଦେଖିଲେ, କଳିକାଗୁଡ଼ିକ ଜ୍ୟୋତ୍ସ୍ନା-ଅଭାବରେ ଝୁରି ମରୁଛନ୍ତି । ସେମାନଙ୍କୁ ଦେଖି ଶାନ୍ତର ମନରେ ଦୟା ହେଲା । ସେ ସେମାନଙ୍କୁ ଚୁମ୍ବନକରି କହିଲା, "ଆହା, ଫୁଲଗୁଡ଼ିକ ମୋ'ପରି କେତେ କଷ୍ଟ ପାଉଛନ୍ତି !" ଶାନ୍ତର ନୟନ ଲୋତକରେ ପୂର୍ଣ୍ଣ ହୋଇଗଲା ।

ନଣନ୍ଦ-ଭାଉଜ ଏପରି ଅନେକ ବେଳଯାଏ ସେଠାରେ ବସି ରହିଲେ । ରଜନୀ ଗାଢ଼ରୁ ଗାଢ଼ତର ହେବାକୁ ଲାଗିଲା । ଗ୍ରାମର ଚୌକିଦାର ଘରେ ଘରେ ବୁଲି ପହରା ଦେଇଗଲା । ଚୌକିଆର ଡାକ ଶୁଣି ଗ୍ରାମଯାକ ସଭିଏ ସତର୍କ ହୋଇ ଶୋଇଲେ । ସେମାନଙ୍କ କୋଳାହଳରେ ରଜନୀର ନିସ୍ତବ୍ଧତା ଟିକିଏ ଭଗ୍ନ ହେଲା । କିଛିକ୍ଷଣ ପରେ ଗ୍ରାମ ପୁଣି ନିଃଶବ୍ଦ ହେଲା । ଝିଙ୍କାରିମାନେ "ଝିଁ ଝିଁ" ଶବ୍ଦ କରିବାକୁ ଲାଗିଲେ । ସର୍ବତ୍ର ଶାନ୍ତର ରାଜ୍ୟ ପ୍ରତିଷ୍ଠିତ ହେଲା ।

ଶାନ୍ତ ଓ ଗୁଞ୍ଜମଣି ଏ ନିସ୍ତବ୍ଧତାମୟୀ ରଜନୀରେ ଉପରୋକ୍ତ ବୃକ୍ଷମୂଳେ ବସି ନାନା ବିଷୟରେ ଗଳ୍ପ କରିବାକୁ ଲାଗିଲେ । ଗୁଞ୍ଜମଣିର କ୍ରୋଡ଼ରେ ମସ୍ତକ ରଖି ଶାନ୍ତ ଅନେକ ବିଳାପ କଲା, କାନ୍ଦି କାନ୍ଦି କୋଳଉପରେ

ଶୋଇପଡ଼ିଲା । ଗୁଞ୍ଜମଣି ନଣନ୍ଦର ଏ ଅବସ୍ଥା ଦେଖି ବ୍ୟଥିତ ମନରେ ଚିନ୍ତା କରିବାକୁ ଲାଗିଲା । ଶାନ୍ତିର ବ୍ୟାକୁଳ-ପ୍ରାଣକୁ ଶୀତଳ କରିବାର ଉପାୟ ତାକୁ ଦିଶିଲା ନାହିଁ । ନିଜ ଦୁଃଖଉପରେ ନଣନ୍ଦର ଦୁଃଖ ତା' ହୃଦୟକୁ ଆକ୍ରମଣ କରି ତାକୁ ଅବସନ୍ନ କରିପକାଇଲା । ସେ ମଧ୍ୟ ବ୍ୟାକୁଳ ହୋଇ କାନ୍ଦିବାକୁ ଲାଗିଲା ।

ଗୁଞ୍ଜମଣିର ଚକ୍ଷୁରୁ ଲୋତକ ଯାଇ ଶାନ୍ତିର ଦେହଉପରେ ପଡ଼ିଲା । ଶାନ୍ତି ଚମକିପଡ଼ି କହିଲା, "ବଡ଼ୁ, ତୁମେ କାନ୍ଦୁଛ ?"

ଶାନ୍ତିର ସେ କରୁଣ ପ୍ରଶ୍ନ ଶୁଣି ଗୁଞ୍ଜମଣିର ହୃଦୟ ଆହୁରି ଉଦ୍ବେଳିତ ହେବାକୁ ଲାଗିଲା । ସେ କି ଉତ୍ତର ଦେବ, କିଛି ସ୍ଥିର କରିପାରିଲା ନାହିଁ । ତାକୁ ଚତୁର୍ଦ୍ଦିଗ ଶୂନ୍ୟ ପ୍ରତୀତ ହେଲା । ଶାନ୍ତିକୁ କୁଣ୍ଢେଇକରି କାନ୍ଦିବାକୁ ଲାଗିଲା । ପରେ ବହୁ କଷ୍ଟରେ ଲୋତକ ସମ୍ବରଣ କରି, କିଛି କହିବାକୁ ଯାଉଥିଲା । ଏମନ୍ତ ସମୟରେ ହଠାତ୍ ଗ୍ରାମର ପୂର୍ବ ପ୍ରାନ୍ତରେ ଗୋଟିଏ ଭୟଙ୍କର ଶବ୍ଦ ଶୁଣାଗଲା । ସେ ଶବ୍ଦ ଶୁଣି ନଣନ୍ଦ—ଭାଉଜ ଚମକି ପଡ଼ିଲେ । ପୂର୍ବ ଦିଗକୁ ନିରୀକ୍ଷଣ କରି ଦେଖିଲେ ଯେ, ଦିଗ୍‌ବଳୟ ରକ୍ତବର୍ଣ୍ଣ ଧାରଣ କରିଅଛି । ସେମାନେ ବ୍ୟାକୁଳ ନୟନରେ ସେ ଅସମ୍ଭାବନୀୟ ଘଟଣା ଦେଖିବାକୁ ଲାଗିଲେ । ଦେଖୁଁ ଦେଖୁଁ ପୂର୍ବ ଦିଗ ଆହୁରି ଭୟଙ୍କର ହେବାକୁ ଲାଗିଲା । ପ୍ରବଳ ଶିଖାରେ ଅଗ୍ନି ପ୍ରଜ୍ଜ୍ୱଳିତ ହୋଇ ପୂର୍ବ ଦିଗର ଭୟଙ୍କରତା ଆହୁରି ବୃଦ୍ଧିକଲା । ଗୃହପରେ ଗୃହ ସେ ଅଗ୍ନିରେ ଭସ୍ମସାତ୍ ହେବାକୁ ଲାଗିଲା । ଗ୍ରାମରେ କ୍ରନ୍ଦନର ରୋଳ ଉଠିଲା । ଗ୍ରାମବାସୀ ସବୁଏ ନିଜ ନିଜ ଗୃହ ପରିତ୍ୟାଗ କରି ଚତୁର୍ଦ୍ଦିଗରେ ହାହାକାର କରିବାକୁ ଲାଗିଲେ ।

ଦେଖୁ ଦେଖୁ ଶାନ୍ତିର ଗୃହରେ ସୁଦ୍ଧା ଅଗ୍ନିର ଲେଲିହ୍ୟମାନ ଜିହ୍ୱା ପରିଦୃଷ୍ଟ ହେଲା । ବାଉଁଶର 'କଟ୍ କଟ୍' 'ଫଟ୍ ଫଟ୍' ଶବ୍ଦରେ ଆକାଶ ପ୍ରତିଧ୍ୱନିତ ହେବାକୁ ଲାଗିଲା । ଶାନ୍ତିର ଜନନୀ ଭୟବିହ୍ୱଳା ହୋଇ

ଗୃହଅଡ଼େ ଅଣ୍ଡାଳ ହେଲେ; କିନ୍ତୁ କୌଣସିଠାରେ ଶାନ୍ତ ଓ ଗୁଞ୍ଜମଣିକୁ ପାଇଲେ ନାହିଁ । ପରଶେଷରେ ଅତିଶୟ କାତର ହୋଇ ଉଦ୍ୟାନକୁ ଆସି ଦେଖିଲେ ଯେ, ଶାନ୍ତ ଓ ଗୁଞ୍ଜମଣି ଗୋଟିଏ ବୃକ୍ଷତଳେ ଛିଡ଼ା ହୋଇ ସେ ଭୟାବହ ଦୃଶ୍ୟ ଦେଖୁଛନ୍ତି । ସେମାନଙ୍କୁ ଦେଖି ତାଙ୍କ ଜୀବନ ପଲ୍ଲବିତ ହେଲା । ତନହେଁଯାକ ବୃକ୍ଷାନ୍ତରାଳରେ ଯାଇ ଲୁଚି ରହିଲେ ।

ସେମାନଙ୍କ ଘର ପୋଡ଼ିବା ସଙ୍ଗେ ଅନେକଗୁଡ଼ିଏ ମୁଣ୍ଡ ଆଲୋକରେ ଦେଖାଗଲା । ଦସ୍ୟୁମାନଙ୍କ "ଧର ଧର" "ମାର ମାର" ଶବ୍ଦରେ ଆକାଶ ବିକମ୍ପିତ ହେବାକୁ ଲାଗିଲା । ଦସ୍ୟୁମାନେ ଘରକୁ ତନ୍ନ ତନ୍ନ କରି ଖୋଜି ଉଦ୍ୟାନକୁ ଆସିଲେ, ଏବଂ ବୃକ୍ଷାନ୍ତରାଳରେ ଶାନ୍ତ ପ୍ରଭୃତିଙ୍କୁ ଦେଖି ଭୟଙ୍କର ଗର୍ଜନସହ ସେମାନଙ୍କୁ ଆକ୍ରମଣ କରିବାକୁ ଉଦ୍ୟତ ହେଲେ ।

ସେମାନେ ସତୀଉପରେ ଅତ୍ୟାଚାର କରିବାକୁ ଯାଉଛନ୍ତି, ଏପରି ସମୟରେ ପଶ୍ଚାତ୍‌ଦିଗରୁ "ଜୟ ମହାରାଜ ଅଭୟସିଂହଙ୍କର ଜୟ" ଶବ୍ଦ ଶୁଣାଗଲା । ସୁଶିକ୍ଷିତ ସିଂହପ୍ରାୟେ ବହୁସଂଖ୍ୟକ ଓଡ଼ିଆ ସୈନିକ ଆସି ଦସ୍ୟୁମାନଙ୍କୁ ଆକ୍ରମଣ କଲେ । ମରହଟ୍ଟାମାନେ ଓଡ଼ିଆମାନଙ୍କ ବୀର୍ଯ୍ୟ ସମ୍ଭାଳି ନ ପାରି ଧରାଶାୟୀ ହେଲେ । ଯେଉଁମାନେ ବଞ୍ଚିଲେ, ସେମାନେ ପ୍ରାଣଭୟରେ ପଳାୟନ କଲେ । ଓଡ଼ିଆ ସତୀର ମାନରକ୍ଷା ହେଲା ।

× × × ×

ଶାନ୍ତ ଏ ଗୋଳମାଳରେ ସଂଜ୍ଞାବିହୀନ ହୋଇ ପଡ଼ିଥିଲା । ଚେତନା ପାଇ ଦେଖିଲା ଯେ, ତା' ମସ୍ତକକୁ କ୍ରୋଡ଼ରେ ରଖି କିଏ ବାରମ୍ବାର ତା'ର ମୁଖ ଚୁମ୍ବନ କରୁଛନ୍ତି । ତାଙ୍କୁ ଚିହ୍ନିବାକୁ ଶାନ୍ତର ବେଶି ବିଳମ୍ବ ହେଲା ନାହିଁ । ଯାହାଙ୍କ ବିରହରେ ସେ ଅଧୀର ହୋଇଥିଲା, ସେହି ଅଜିତସିଂହ ତାକୁ କୋଳରେ ଧରିଛନ୍ତି । ପ୍ରାଣକାନ୍ତଙ୍କୁ ଦେଖି ଶାନ୍ତର ଚକ୍ଷୁରୁ ଅବିରଳ ଅଶ୍ରୁଧାରା ବହିବାକୁ ଲାଗିଲା । ତା' ମୁଖରୁ କଥା

ବାହାର ପାରିଲା ନାହିଁ । ଅଜୟସିଂହଙ୍କର ମଧ୍ୟ ସେହି ଦଶା । ସେ କେବଳ ନୀରବରେ ଶାନ୍ତିର ମୁଖକୁ ଚୁମ୍ବନ କରିବାକୁ ଲାଗିଲେ । ସେ ଚୁମ୍ବନରେ କୃତାର୍ଥ ହୋଇ ଶାନ୍ତି ହୃଦୟେଶ୍ୱରଙ୍କ ଅଙ୍କରେ ଶୟନ କଲା ।

# ଅରୁଣା

## ପ୍ରଥମ ପରିଚ୍ଛେଦ

### ଶତ୍ରୁ-ଶିବିରରେ

"କଥଂ ନଗର—ସଂସତାଽସି । ଦ୍ରୁତଂ
ନୟାମି ଭବତମିତଃ—" ରତ୍ନାବଲୀ ।

ପ୍ରାୟ ଅଠାଇଶବର୍ଷ ପୂର୍ବେ ସମ୍ବଲପୁର ଦୁର୍ଗର ଉତ୍ତର-ପଶ୍ଚିମ-ସୀମାନ୍ତ ବର୍ତ୍ତୀ ସିଂଘୋଡ଼ା ଗିରିସଙ୍କଟ ନିକଟରେ ଜଣେ ଅଶ୍ୱାରୋହୀ ସତର୍କଭାବରେ ଚତୁର୍ଦ୍ଦିଗ ନିରୀକ୍ଷଣ କରି ଅଶ୍ୱ-ଚାଳନା କରୁଥିଲେ । ଅଶ୍ୱାରୋହୀଙ୍କ ବୟସ ୩୫ ବର୍ଷ ହେବ । ତାଙ୍କ ବେଶଭୂଷାରୁ ଜଣା ଯାଉଥିଲା, ସେ ଜଣେ ମରହଟ୍ଟା ସୈନିକ । ତାଙ୍କ ସର୍ବାଙ୍ଗ ଲୌହ-ବର୍ମାଚ୍ଛାଦିତ; ମସ୍ତକରେ ହୀରକ-ଖଚିତ ଉଷ୍ଣୀଷ । ମୁଖ ବୀରତ୍ୱ-ବ୍ୟଞ୍ଜକ ଓ ଉତ୍ସାହପୂର୍ଣ୍ଣ; ଶରୀର ସୌଷ୍ଠବାନ୍ୱିତ ଓ ପୂର୍ଣ୍ଣାୟତନ । ଅଶ୍ୱାରୋହୀ ଗିରିସଙ୍କଟ ନିକଟକୁ ଯାଇ କିଛୁକ୍ଷଣ ଅଶ୍ୱର ଗତିରୋଧ କଲେ ଏବଂ ମନ ମଧ୍ୟରେ କଣ ଭାବି ପରେ ଗିରିପଥକୁ ଅନାଇଲେ । ସେତେବେଳକୁ ସୂର୍ଯ୍ୟ ଅସ୍ତପ୍ରାୟ । ଅସ୍ତାଚଳ-ଗମନୋନ୍ମୁଖ ସୂର୍ଯ୍ୟଦେବ ସ୍ୱର୍ଣ୍ଣ କିରଣରେ ପର୍ବତ-ଗାତ୍ରକୁ ରଞ୍ଜି ବୃକ୍ଷ-ଲତା-ପରିଶୋଭିତ ଭୂଧରକୁ ଅପୂର୍ବ ଶୋଭାରେ

---

ଅରୁଣା—ଗୋଟିଏ ବଙ୍ଗଳା ଗଳ୍ପର ଅବଲମ୍ବନରେ ଲିଖିତ ।

ବିଭୂଷିତ କରୁଅଛନ୍ତି । ସନ୍ଧ୍ୟାଗମ ଦେଖି ପକ୍ଷୀମାନେ ସ୍ୱ ସ୍ୱ କୁଳାୟ-ଅଭିମୁଖରେ ପ୍ରତ୍ୟାବୃତ୍ତ ହେଉଛନ୍ତି । ମୃଗମାନେ ଚଞ୍ଚଳ ପଦବିକ୍ଷେପରେ ଅରଣ୍ୟରେ ମର୍ମର ଶବ୍ଦ ସୃଷ୍ଟି କରି ଭୟାକୁଳ-ଚିତ୍ତରେ ବିଚରଣ କରୁ ଅଛନ୍ତି ।

ଅଶ୍ୱାରୋହୀ ଅଶ୍ୱ-ପୃଷ୍ଠରେ ଆରୂଢ଼ ହୋଇ କିଛିକ୍ଷଣ ପ୍ରକୃତିର ସାୟନ୍ତନୀ ଲୀଳା ଦେଖିବାକୁ ଲାଗିଲେ । ପରେ ଅରଣ୍ୟକୁ ଲକ୍ଷ୍ୟ କରି ଶଙ୍ଖଧ୍ୱନି କଲେ । ଶଙ୍ଖଧ୍ୱନି ହେବା ମାତ୍ରକେ ଅରଣ୍ୟମଧ୍ୟରୁ ବହୁସଂଖ୍ୟକ ଅଶ୍ୱାରୋହୀ ଓ ପଦାତିକ ନିର୍ଗତ ହେଲେ ଏବଂ ସନ୍ତୁଷ୍ଟନୟନରେ ଉପରୋକ୍ତ ଅଶ୍ୱାରୋହୀଙ୍କ ଆଡ଼େ ଅନାଇବାକୁ ଲାଗିଲେ । ଅଶ୍ୱାରୋହୀ ନୀରବରେ ଅଗ୍ରସର ହେଲେ । ତାଙ୍କ ମୁଖ ଅଧୁନା ଗମ୍ଭୀର; ମନ ଚିନ୍ତାକୁଳ । ନବାଗତ ସୈନିକମାନେ ତାହାଙ୍କର ଅନୁସରଣ କରିବାକୁ ଲାଗିଲେ । ସେମାନଙ୍କ ପଛେ ପଛେ ଭାରବାହୀ ଗର୍ଦ୍ଦଭ ଏବଂ ମହିଳାମାନେ ରକ୍ଷି-ପରିବେଷ୍ଟିତ ହୋଇ ଯିବାକୁ ଲାଗିଲେ । କିଛି ଦୂର ଗଲାପରେ ଅଶ୍ୱାରୋହୀ ପୁଣି ଅଶ୍ୱର ଗତିରୋଧ କଲେ । ସେତେବେଳକୁ ସୂର୍ଯ୍ୟାସ୍ତ ହୋଇ ସାରଲାଣି । ନିଶା ଆଗମନ ଦେଖି ଅଶ୍ୱାରୋହୀଙ୍କ ମନ ଆହୁରି ଚିନ୍ତାକୁଳ ହେଲା । ସେ କିଛିକ୍ଷଣ ନୀରବରେ ରହି କର୍ତ୍ତବ୍ୟ ସ୍ଥିର କରିବାକୁ ଲାଗିଲେ ।

ହଠାତ୍ ପଶ୍ଚାଦ୍ଦେଶରୁ "ଜୟ ସମଲାଈର ଜୟ" ଶବ୍ଦ ଶ୍ରୁତିଗୋଚର ହେଲା । ବହୁସଂଖ୍ୟକ ଅଶ୍ୱାରୋହୀ ପର୍ବତରୁ ଅବତରଣ କରି ମରହଟ୍ଟା ସେନା ଆକ୍ରମଣ କଲେ । ମରହଟ୍ଟାମାନେ ଏପରି ଅତର୍କିତଭାବରେ ଶତ୍ରୁଦ୍ୱାରା ଆକ୍ରାନ୍ତ ହୋଇ ପ୍ରମାଦ ଗଣିଲେ । ବିଶେଷତଃ ସେତେବେଳକୁ ସେମାନେ ଗିରିସଙ୍କଟ ଭିତରକୁ ଆସି ସାରିଥିଲେଣି । ଏଆଡ଼େ ଘୋର ତାମସୀ ରଜନୀ; ତା'ପରେ ପୁଣି ଅଜ୍ଞାତ ପ୍ରଦେଶ । ଏପରି ଅବସ୍ଥାରେ ସେମାନେ ହଠାତ୍ ଶତ୍ରୁର ସମ୍ମୁଖୀନ ହୋଇ କଣ କରିବେ, କିଛି ଠିକ୍

କରି ପାରିଲେ ନାହିଁ । କିନ୍ତୁ ମହାରାଷ୍ଟ୍ର ଜାତି ସହଜରେ ଭୀତ ହେବାର ଜାତି ନୁହନ୍ତି । ସେମାନେ କପଟ-ଯୁଦ୍ଧରେ ପଟୁ । ଶତ୍ରୁର ଏପରି ଗତି ଦେଖି ସେତେବେଳେ ଯୁଦ୍ଧ କରିବା ଅନୁଚିତ ମନେ କରି ସେମାନେ ପୃଷ୍ଠଭଙ୍ଗ ଦେବାର ସ୍ଥିର କଲେ । ଅଗ୍ରଗାମୀ ମହାରାଷ୍ଟ୍ର ଅଶ୍ୱାରୋହୀଙ୍କ ସଙ୍କେତ ମତେ ସେମାନେ ମହାରାଷ୍ଟ୍ର-ଜାତି-ସୁଲଭ ଚଞ୍ଚଳ ପଦବିକ୍ଷେପରେ ଅରଣ୍ୟ ମଧ୍ୟରେ ପ୍ରବେଶ କଲେ । ଶତ୍ରୁମାନେ ସେମାନଙ୍କ ପଳାୟନ-ତତ୍ପର ଦେଖି ପଶ୍ଚାଦ୍ଧାବନ କଲେ ଏବଂ ଅବିରତ ଶରନିକ୍ଷେପ ଦ୍ୱାରା ଅନେକଙ୍କୁ ହତାହତ କଲେ । କିନ୍ତୁ ମହାରାଷ୍ଟ୍ରମାନେ ଶର-ନିକ୍ଷେପପ୍ରତି ଭ୍ରୂକ୍ଷେପ ନ କରି ଗନ୍ତବ୍ୟ ପଥରେ ଅଗ୍ରସର ହେଲେ । ସେମାନେ ନିଜେ ପଳାଇବାକୁ ସମର୍ଥ ହେଲେ ସୁଦ୍ଧା ପଶ୍ଚାତ୍‌ଗାମୀ ମହିଳା ପ୍ରଭୃତିଙ୍କୁ ରକ୍ଷା କରି ପାରିଲେ ନାହିଁ । ସେ ସବୁ ଶତ୍ରୁମାନଙ୍କ ହସ୍ତଗତ ହେଲା । ଶତ୍ରୁମାନେ ମହାରାଷ୍ଟ୍ର-ମାନଙ୍କ ସମ୍ପତ୍ତି ଲୁଟି କରିବାକୁ ଲାଗିଲେ ।

କିଛିକ୍ଷଣ ପରେ ଜଣେ ପଞ୍ଚବିଂଶତିବର୍ଷୀୟ ଯୁବକ ଅଶ୍ୱ-ପୃଷ୍ଠରେ ପର୍ବତମଧ୍ୟରୁ ବାହାରି ସେମାନଙ୍କୁ ଲୁଣ୍ଠନ-କାର୍ଯ୍ୟରୁ ନିବୃତ୍ତ କଲେ । ତାଙ୍କ ଆଦେଶମତେ ତାଙ୍କ ଅନୁଚରମାନେ ଶତ୍ରୁର ପଶ୍ଚାଦ୍ଧାବନ-କାର୍ଯ୍ୟରୁ ବିରତ ହୋଇ ଅରଣ୍ୟ-ଭିତରକୁ ଚାଲିଗଲେ । ଯୁବକ କେତେଜଣ ବିଶ୍ୱସ୍ତ ଅନୁଚରଙ୍କୁ ଡାକି ଅପହୃତ ମହାରାଷ୍ଟ୍ରରମଣୀମାନଙ୍କୁ ସେମାନଙ୍କ ତତ୍ତ୍ୱାବଧାନରେ ମହାରାଷ୍ଟ୍ର-ସେନାପତିଙ୍କ ନିକଟକୁ ପ୍ରେରଣ କଲେ । କିନ୍ତୁ ଜଣେ ପଞ୍ଚଦଶବର୍ଷୀୟା ଯୁବତୀଙ୍କୁ ବନ୍ଦୀକରି ରକ୍ଷୀଗଣ ସମଭିବ୍ୟାହାରରେ ନିଜ ଦୁର୍ଗକୁ ପଠାଇ ନିଜେ ଦୁର୍ଗାଭିମୁଖରେ ଅଗ୍ରସର ହେଲେ । ଉକ୍ତ ଯୁବତୀ ସଙ୍ଗେ ଜଣେ ଦାସୀ ସୁଦ୍ଧା ଇଚ୍ଛାପୂର୍ବକ ବନ୍ଦୀ ହେଲା ।

ଗିରି-ଶିଖରବର୍ତ୍ତିତ ଦୁର୍ଗଭିତରକୁ ଯାଇ ଯୁବକ ଉପରୋକ୍ତ ଯୁବତୀଙ୍କୁ ସ୍ୱ ଶିବିରକୁ ଡକାଇଲେ । ଯୁବତୀ ସଙ୍ଗରେ ଦାସୀ ମଧ୍ୟ ଆସିଲା । ଯୁବତୀଙ୍କୁ

ଦେଖି ଯୁବକ କହିଲେ, "ସେନାପତିନନ୍ଦିନୀ, ଉତ୍ତମମାନଙ୍କ ଆଚରଣ ଦେଖି ରୁଷ୍ଟ ହେବେ ନାହିଁ । କ୍ଷତ୍ରିୟମାନେ ଯୁଦ୍ଧରେ ଜୟଲାଭ କରି ଶୂନ୍ୟ ହସ୍ତରେ ପ୍ରତ୍ୟାବୃତ୍ତ ହୁଅନ୍ତି ନାହିଁ । ଏଣୁ ଆଜି ସେନାପତିନନ୍ଦିନୀ ଏ ଦୁର୍ଗରେ ବନ୍ଦିନୀ । କିନ୍ତୁ ତୁମ୍ଭର ଭୟ କରିବାର କୌଣସି କାରଣ ନାହିଁ । ଦୁର୍ଗରେ ତୁମ୍ଭଙ୍କୁ ସମୁଚିତ ସମ୍ମାନ ଦିଆଯିବ ।"

ଯୁବକଙ୍କ କଥା ଶୁଣି ଯୁବତୀ ନୀରବରେ ତଳକୁ ମୁହିଁ କରି କାନ୍ଦିବାକୁ ଲାଗିଲା । ଦାସୀ କହିଲା, "ଆପଣ ଆପଣଙ୍କ କାର୍ଯ୍ୟ କରିଛନ୍ତି । ସେଥିପାଇଁ ଆମ୍ଭେମାନେ ଆପଣଙ୍କୁ ନିନ୍ଦା କରୁ ନାହୁଁ । କିନ୍ତୁ ମରହଟ୍ଟା-ଶିବିରରେ କି ଆଉ କିଛି ନ ଥିଲା ?"

"ଥାଇପାରେ । କିନ୍ତୁ ସେଥିରେ ଆମର ଲୋଭ ନାହିଁ । କ୍ଷତ୍ରିୟ-ଜାତି ଚୋରି କରେ ନାହିଁ ।"

"ସେନାପତି-ନନ୍ଦିନୀଙ୍କୁ ଏପରି ବଳପୂର୍ବକ ଆଣିବା ଚୋରିର କାର୍ଯ୍ୟ ନୁହେ କି ? ଆପଣ ବୀର—ଯୁଦ୍ଧରେ ଶତ୍ରୁକୁ ପରାସ୍ତ କରିଛନ୍ତି । କିନ୍ତୁ ରମଣୀ ଉପରେ ଅତ୍ୟାଚାର ବୀରର କାର୍ଯ୍ୟ ନୁହେ ।"

"ରମଣୀ ଉପରେ କୌଣସି ଅତ୍ୟାଚାର ହୋଇ ନାହିଁ । ବୀର-ନାରୀ ବୀର-ଭୋଗ୍ୟା । ସେନାପତି-ନନ୍ଦିନୀ ବୀର-ରମଣୀ; ସେ ବୀର-ପୁରୁଷର ଯୋଗ୍ୟା । ତାଙ୍କୁ ବୀରପୁରୁଷ-ହସ୍ତରେ ନ୍ୟସ୍ତ ହେବାର ଦେଖିଲେ ସୁଖୀ ହେବ ।"

" ତାଙ୍କ ହୃଦୟ-ରାଜ୍ୟରେ ରାଜା ହେବା ପାଇଁ ମରହଟ୍ଟା ବୀର ଅଛନ୍ତି । ଏଠାରେ ରହିଲେ ତାଙ୍କ ମନରେ ଦୁଃଖଛଡ଼ା ସୁଖ ହେବ ନାହିଁ ।"

"ଯଦି ସେପରି ହୁଏ, ତାଙ୍କ ମନରେ କଷ୍ଟ ଦେବା ମୋର ଉଦ୍ଦେଶ୍ୟ ନୁହେ । ମୁଁ ଏଇକ୍ଷଣି ତାଙ୍କୁ ନିରାପଦରେ ତାଙ୍କ ପିତାଙ୍କ ନିକଟକୁ ପଠାଇ

ଦେବ । ଓଡ଼ିଆଜାତି ଅବଳାପ୍ରତି ସମ୍ମାନ ଦେଖାଇ ଜାଣେ । ସେନାପତି-ନନ୍ଦିନୀ ପିତୃ-ଶିବିରରେ ଥାଇ ଦେଖିବେ ଯେ, ଓଡ଼ିଆବୀର ମରହଟ୍ଟା-ବୀର ଅପେକ୍ଷା ନିକୃଷ୍ଟ ନୁହନ୍ତି ।"

ଯୁବକଙ୍କ ଶେଷ ବାକ୍ୟ ଶୁଣି ଯୁବତୀ ଲୋତକ ସମ୍ବରଣ କରି ତାଙ୍କ ଆଡ଼କୁ ଅନାଇଲା । ଯୁବକଙ୍କ ମୁଖରେ ଉଦାରତାର ସ୍ପଷ୍ଟ ଚିହ୍ନ ଦେଖି ସେ ମୁଗ୍ଧ ହୋଇଗଲା । ଇତ୍ୟବସରରେ ଯୁବକଙ୍କ ଚକ୍ଷୁସହିତ ତାହାର ଚକ୍ଷୁ ମିଳିତ ହେଲା । ସେ ଲଜ୍ଜାରେ ତଳକୁ ଅନାଇବାକୁ ଲାଗିଲା । ଯୁବକଙ୍କ ହୃଦ ପୂର୍ବେ ଯେ ବିରକ୍ତି ଜନ୍ମିଥିଲା, ତାହା କେଉଁଆଡ଼େ ଉଭେଇଗଲା । ତାହାର ଶରୀରର ପ୍ରତ୍ୟେକ ଶିରାରେ ଅନନୁଭୂତ ତଡ଼ିତ-ପ୍ରବାହ ବହିବାକୁ ଲାଗିଲା । ଯୁବତୀର ଭାବାନ୍ତର ଦେଖି ଯୁବକ କହିଲେ, "ଯଦି ସେନାପତି-ନନ୍ଦିନୀଙ୍କ ଇଚ୍ଛାହୁଏ, ତାହାହେଲେ ତାଙ୍କୁ ଅନତି-ବିଳମ୍ବେ ପିତୃ-ସମୀପକୁ ପଠାଇବାର ବନ୍ଦୋବସ୍ତ କରିବି ।",

ଦାସୀ ଉତ୍ତର ଦେବାକୁ ଅସମର୍ଥ ହୋଇ ଯୁବତୀର ମୁଖ ଆଡ଼କୁ ଅନାଇଲା । ତାହାର ମନର ଭାବ ବୁଝିପାରି ଯୁବତୀ ବିପଦରେ ପଡ଼ିଲା । ଯୁବକଙ୍କ ପ୍ରତି ଅଲକ୍ଷିତରେ ତାର ଆନ୍ତରିକ ଶ୍ରଦ୍ଧା ଜାତ ହୋଇଛି । ତାଙ୍କୁ ଛାଡ଼ିଯିବା ଅଧୁନା ଏକାବେଳକେ ଅସମ୍ଭବ । ଏଆଡ଼େ ପୁଣି ଶତ୍ରୁଦୁର୍ଗରେ ବନ୍ଦୀ ହୋଇ ରହିବା ଅସହ୍ୟ । ଯୁବତୀକୁ ଆଉ ବୁଦ୍ଧିବାଟ କିଛି ଦିଶିଲାନାହିଁ । ପରେ ସେ ବହୁ କଷ୍ଟରେ କହିଲା, "ଯଦି ମରହଟ୍ଟା ସେନାପତିଙ୍କ ବାହୁରେ ବଳଥାଏ; ସେ ନିଜେ ଆସି ମତେ ମୁକୁଳାଇବେ । ମରହଟ୍ଟା-ରମଣୀ ଶତ୍ରୁର କୃପାର ପାତ୍ର ହେବାକୁ ସୁଖକର ମଣେନାହିଁ ।"

ତାହାର ଏ କଥା ଶୁଣି ଯୁବକ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ସେ ମନେ ମନେ ତାକୁ ପ୍ରଶଂସା କରିବାକୁ ଲାଗିଲେ । ପରେ ଉଭୟଙ୍କ

ରହିବାର ସୁବନ୍ଦୋବସ୍ତ କରି ଦୁର୍ଗ ରକ୍ଷାର୍ଥ ଦୁର୍ଗ-ଦ୍ୱାରଆଡ଼େ ଅଗ୍ରସର ହେଲେ ।

## ଦ୍ୱିତୀୟ ପରିଚ୍ଛେଦ

### ସଂକ୍ଷିପ୍ତ ପରିଚୟ ।

"—ନପାରିଲେ କିଣି,
ଯୁଦ୍ଧକ୍ଷେତ୍ରେ ମରିବାଟି ନିଜ ହାତ କଥା ।" — ମହାଯାତ୍ରା ।

ମରହଟ୍ଟା-ସେନାପତି-ନନ୍ଦିଜୀଙ୍କୁ ଗିରିଦୁର୍ଗରେ ଛାଡ଼ି ସମ୍ବଲପୁରର ତତ୍କାଳୀନ ଇତିହାସ ବିଷୟରେ ଆଲୋଚନା କଲେ, ବୋଧହୁଏ, ଅସଙ୍ଗତ ହେବନାହିଁ । ଉପନ୍ୟାସ-ରସିକ ପାଠକମାନେ ନୀରସ ଇତିବୃତ୍ତ-ବୃତ୍ତାନ୍ତ ଜାଣିବାକୁ ଅନିଚ୍ଛୁକ ହୋଇ ପାରନ୍ତି । କିନ୍ତୁ ଲେଖକ ନାଚାର । ଗଳ୍ପକୁ ପୂର୍ଣ୍ଣାଙ୍ଗ କରିବାକୁ ଗଲେ ଇତିହାସ ବିଷୟରେ ଦୁଇପଦ କଥା କହିବା ଦରକାର, ନୋହିଲେ ଏ ଗଳ୍ପର ଐତିହାସିକ ବ୍ୟକ୍ତିମାନେ ଅଳ୍ପିକରୂପେ ଅପରିଚିତ ହୋଇ ରହିଯିବେ । ଏଣୁ ପାଠକମାନେ ଅନୁଗ୍ରହ କରି କ୍ଷମା କରିବେ ।

ଅଷ୍ଟାଦଶ ଶତାବ୍ଦୀରେ ଭାରତରେ ମରହଟ୍ଟାମାନଙ୍କ ଅପ୍ରତିହତ ପ୍ରଭାବ ବିସ୍ତାରିତ ହୋଇଥିଲା । ସେମାନେ ଭାରତର ଏକ ପ୍ରାନ୍ତରୁ ଅପରପ୍ରାନ୍ତ ଯାଏ ସମର ଘୋଷଣା କରି ଭାରତରେ ହିନ୍ଦୁ ସାମ୍ରାଜ୍ୟ ସଂସ୍ଥାପନ କରିବାକୁ ପ୍ରୟାସୀ ହୋଇଥିଲେ । କିନ୍ତୁ ଏ ସମୟରେ ସେମାନଙ୍କ ପତନର ସୂତ୍ରପାତ ହୋଇଥିଲା ମଧ୍ୟ । ମରହଟ୍ଟା-ରାଜ୍ୟ-ପ୍ରତିଷ୍ଠାତା ଶିବାଜୀଙ୍କ ନୀତି ଛାଡ଼ି ସେମାନେ ହିନ୍ଦୁରାଜ୍ୟରେ ସୁଦ୍ଧା ନୃଶଂସ ଦସ୍ୟୁବୃତ୍ତି ଆଚରଣ କରୁଥିଲେ । ଅର୍ଥ-ଲୋଭରେ ପଡ଼ି ସେମାନେ ଭାରତର ପବିତ୍ର ବକ୍ଷରେ ରକ୍ତର ନଦୀ ପ୍ରବାହିତ କରୁଥିଲେ ।

ଏହି ସମୟରେ ସମ୍ବଲପୁରରାଜ୍ୟର ପ୍ରଶାନ୍ତ ମୁଖରେ ସ୍ୱାଧୀନତାର ସୁମଧୁର ହାସ୍ୟ ପ୍ରତିଭାତ ହେଉଥିଲା । ସମ୍ବଲପୁର ବାଣିଜ୍ୟରେ, ବୀର୍ଯ୍ୟରେ, ଐଶ୍ୱର୍ଯ୍ୟରେ ଭାରତର ଅନ୍ୟାନ୍ୟ ସ୍ୱାଧୀନ ରାଜ୍ୟମାନଙ୍କ ସମକକ୍ଷ ହୋଇ ସଭ୍ୟଜଗତରେ ମୁଖ ଦେଖାଇବାକୁ ସମର୍ଥ ହୋଇଥିଲା । ସମ୍ବଲପୁରର ହୀରକ-ବାଣିଜ୍ୟ ଭାରତବର୍ଷର ତଦାନୀନ୍ତନ ଗଭର୍ଣ୍ଣର ଲର୍ଡ କ୍ଲାଇବଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ସମ୍ବଲପୁର ହୀରା ପାଇଁ ଚିରକାଳ ପ୍ରସିଦ୍ଧ । Ptolemy, Pliny ପ୍ରଭୃତି ବୈଦେଶିକ ଲେଖକମାନେ ଏହି ହୀରା ବିଷୟରେ ଅନେକ କଥା ଲେଖିଅଛନ୍ତି । ପ୍ରସିଦ୍ଧ ଇତିହାସ-ଲେଖକ Gibbon ଲେଖିଅଛନ୍ତି—" As well as we can compare ancient with modern geography, Rome was supplied with diamond from the mine of Sambalpur in Bengal " ସେ ତ ପୁରାତନ ଯୁଗର କଥା । ଆମ୍ଭେମାନେ ଯେଉଁ ସମୟର କଥା କହୁଅଛୁଁ, ସେହି ସମୟରେ ମଧ୍ୟ ସମ୍ବଲପୁରର ହୀରକ-ବାଣିଜ୍ୟ ପ୍ରସିଦ୍ଧି ଲାଭ କରିଥିଲା । ହାୟ ! ଆଜି ସେ ହୀରାକୁଦ ଅଛି; ସେହି ସମ୍ବଲପୁର ଅଛି; ସେହି ମହାନଦୀ କଲକଲ ରବରେ ସମ୍ବଲପୁରବାସିଙ୍କୁ ମୁଗ୍ଧ କରି ମାତୃ-ସ୍ତନ୍ୟ-ଧାରାପ୍ରାୟେ ସମ୍ବଲପୁରର ବକ୍ଷରେ ପ୍ରବାହିତ ହେଉଅଛି । କିନ୍ତୁ ସେ ହୀରକ କାହିଁ ! ସେ ବୀରପୁରୁଷମାନେ କାହାନ୍ତି ! ହାୟ, ସେ ଦିନ ଆଉ ଏ ଦିନ !

ଖ୍ରୀଷ୍ଟାବ୍ଦ ୧୭୬୦ ସାଲଯାଏ ସମ୍ବଲପୁରରେ ଶତ୍ରୁର ନାମ ସୁଦ୍ଧା ଶୁଣା ନ ଥିଲା । କିନ୍ତୁ ଯେତେବେଳେ ମରହଟ୍ଟାମାନେ ଓଡିଶାର ବିପୁଳ ଐଶ୍ୱର୍ଯ୍ୟ ପ୍ରତି ଆକୃଷ୍ଟ ହୋଇ ଓଡିଶାରୁ ଚଉଥ ସଂଗ୍ରହ କରିବା ଆଶାରେ ହିନ୍ଦୁ-ରାଜ୍ୟରେ ଘୋର ଲୁଣ୍ଠନ ଆରମ୍ଭ କଲେ, ଓଡିଶାର ଦକ୍ଷିଣ ବାହୁରୂପୀ ସମ୍ବଲପୁରରାଜ୍ୟ ମରହଟ୍ଟା ବର୍ଗୀମାନଙ୍କଦ୍ୱାରା ଆକ୍ରାନ୍ତ ହୋଇଥିଲା । ସମ୍ବଲପୁରର ବିଖ୍ୟାତ ନରପତି ଅଭୟସିଂହଙ୍କ ଶାସନକାଳରେ ମରହଟ୍ଟା -

ମାନଙ୍କ ଆକ୍ରମଣର ସୂତ୍ରପାତ ହେଲା । କେତେଗୋଟି ମରହଟ୍ଟା ପୋତ ତୋପଦ୍ୱାରା ବୋଝାଇ ହୋଇ କଟକରୁ ମହାନଦୀ-ବକ୍ଷରେ ନାଗପୁର ଅଭିମୁଖରେ ଯାତ୍ରା କରୁଥିଲା । ଯେତେବେଳେ ପୋତଗୁଡ଼ିକ ସମ୍ବଲପୁରର ନିକଟବର୍ତ୍ତୀ ହେଲା, ଅଭୟସିଂହ ତାଙ୍କ ପ୍ରଧାନ ମନ୍ତ୍ରୀ ଆକବର ରାୟଙ୍କ ପରାମର୍ଶ ଅନୁସାରେ ଉକ୍ତ ପୋତଗୁଡ଼ିକୁ ମହାନଦୀ-ବକ୍ଷରେ ନିମଜ୍ଜିତ କରି ତୋପସବୁ ଅଧିକାର କଲେ । ନାଗପୁରାଧିପତି ଏ ସମ୍ବାଦ ପାଇ କ୍ରୋଧରେ ଅଧୀର ହୋଇଗଲେ । ଅଭୟସିଂହଙ୍କୁ ସମୁଚିତ ଶାସ୍ତି ଦେବା ସକାଶେ ସେ ତାଙ୍କ ବିରୁଦ୍ଧରେ ବିପୁଳ ବାହିନୀ ପ୍ରେରଣ କଲେ । ଉକ୍ତ ବାହିନୀକୁ ପାଠକମାନେ ସିଙ୍ଘୋରା ଗିରିସଙ୍କଟରେ ଦେଖିଅଛନ୍ତି, ଏବଂ ସେଠାରେ ଯାହା ଯାହା ଘଟିଲା, ତହିଁର ବିସ୍ତୃତ ବିବରଣ ପୂର୍ବ ପରିଚ୍ଛେଦରେ ପ୍ରଦତ୍ତ ହୋଇଅଛି ।

ମରହଟ୍ଟାମାନଙ୍କ ତୋପସବୁ ଅଧିକାର କରି ଅଭୟସିଂହ ଦୁର୍ଗରକ୍ଷାର ସୁବନ୍ଦୋବସ୍ତ କରିବାକୁ ଲାଗିଲେ । ଅଠର ଗଡ଼ଜାତରୁ (୧) ସୁଶିକ୍ଷିତ ଓଡ଼ିଆ ସୈନିକମାନେ ଆସି ସମ୍ବଲପୁର ଦୁର୍ଗରେ ସମବେତ ହେଲେ । ସମ୍ବଲ-ପୁରରେ ଉତ୍ସାହର ଲହରୀ ନାଚି ଉଠିଲା । ଗ୍ରାମେ ଗ୍ରାମେ ସମର-ସମ୍ବାଦ ପ୍ରଚରିତ ହେଲା । ମା' ସମଲେଶ୍ୱରୀଙ୍କ ରାଜ୍ୟରେ ଶାନ୍ତି-ସଂସ୍ଥାପନ ସକାଶେ ଦୃଢ଼ପ୍ରତିଜ୍ଞ ହୋଇ ସମ୍ବଲପୁରବାସୀମାନେ ପ୍ରାଣର ମମତା ଭୁଲି "ଝାରଖଣ୍ଡ ଛତ୍ରପତି ମହାରାଜ" (୨) ଅଭୟସିଂହଙ୍କ ଛତ୍ରତଳେ ସମବେତ

---

(୧) କଳାହାଣ୍ଡି, ପାଟଣା, ସୋନପୁର, ରେଢ଼ାଖୋଲ, ବଉଦ, ବାମଣ୍ଡା, ଆଠମଲ୍ଲିକ, ଗାଙ୍ଗପୁର, ବଣାଇ, ଶକ୍ତି, ସାରଙ୍ଗଡ଼, ରାୟଗଡ଼ ପ୍ରଭୃତି ଅଠର ଗୋଟି ରାଜ୍ୟ ସମ୍ବଲପୁରର ଅଧୀନରେ ଥିଲା ।

(୨) ସମ୍ବଲପୁରର ନରପତି ବଳୀୟାର ସିଂହ ସ୍ୱୀୟ ବୁଦ୍ଧିମତ୍ତା ଓ ଶକ୍ତିର ପରିଚୟ ଦେଇ ଓଡ଼ିଶାର ଗଜପତି ମହାରାଜଙ୍କଠାରୁ ଏ ଉପାଧିସହ ତାଙ୍କ କନ୍ୟାରତ୍ନ ଲାଭ କରିଥିଲେ । ସେହି ସରେ ସମ୍ବଲପୁରର ଅଧିପତିମାନେ ଏହି ଉପାଧିରେ ପରିଚିତ ।

ହେବାକୁ ଲାଗିଲେ । ସେମାନଙ୍କ ଆୟୋଜନ କୋଳାହଳରେ ସମଗ୍ର ସମ୍ବଲପୁର କମ୍ପିତ ହୋଇ ସୁପ୍ତ ପ୍ରାଣରେ ସ୍ୱାଧୀନ ଜାଗରଣ-ମନ୍ତ୍ର ପଢ଼ିବାକୁ ଲାଗିଲା । ମା' ସମଲେଶ୍ୱରୀଙ୍କ ରଣ-ରଙ୍ଗିଣୀ ମୂର୍ତ୍ତି ଭୟଙ୍କର ହେଲା ।

ସ୍ଥଳ-ପଥରେ ମରହଟ୍ଟାମାନଙ୍କ ଗତିରୋଧ କରିବାର ଉପଯୁକ୍ତ ସ୍ଥାନ ମଣି ଅଭୟସିଂହ ସିଂଘୋଡ଼ା ଗିରି-ସଙ୍କଟକୁ ବହୁସଂଖ୍ୟକ ସୈନିକ ପ୍ରେରଣ କଲେ । ବହୁ-ଗିରି-ପରିବେଷ୍ଟିତ ସମ୍ବଲପୁର ରାଜ୍ୟରେ ସିଂଘୋଡ଼ା ଅନେକ ଥର ସମ୍ବଲପୁରର ମାନରକ୍ଷା କରିଅଛି । ଆଜି ଅଭୟସିଂହ ନିଜେ ସମ୍ବଲପୁର-ଦୁର୍ଗ-ରକ୍ଷାର ଭାର ନେଇ ତାଙ୍କ ସେନାପତି ପୃଥ୍ୱୀସିଂହଙ୍କ ଅଧୀନରେ ଅନେକ ସୈନ୍ୟ ସିଂଘୋଡ଼ାରେ ମରହଟ୍ଟାମାନଙ୍କ ଗର୍ବ ଚୂର୍ଣ୍ଣ କରିବା ସକାଶେ ପଠାଇଲେ ।

ପୃଥ୍ୱୀସିଂହ ସିଂଘୋଡ଼ାକୁ ଆସି ପ୍ରଥମେ ଗିରି-ଶିଖର-ସ୍ଥିତ ଗୋଟିଏ ପାର୍ବତ୍ୟ ଦୁର୍ଗର ଆଶ୍ରୟ ଗ୍ରହଣ କଲେ । ସେଠାରେ ବହୁ ଦିନର ଖାଦ୍ୟ ସଂଗୃହୀତ ହେବା ସଙ୍ଗେ ସଙ୍ଗେ ଦୁର୍ଗ-ରକ୍ଷାର ମଧ୍ୟ ସୁବନ୍ଦୋବସ୍ତ ହେବାକୁ ଲାଗିଲା । ଦୁର୍ଗରେ ଅଳ୍ପସଂଖ୍ୟକ ସୈନିକ ରଖି ଅବଶିଷ୍ଟ ସୈନିକମାନଙ୍କୁ ପୃଥ୍ୱୀସିଂହ ଗିରିସଙ୍କଟର ସ୍ଥାନେ ସ୍ଥାନେ ଲୁଚାଇ ରଖିଲେ ଓ ଦୁର୍ଗ ପ୍ରାଚୀରରେ ଲତା-ଗ୍ରଥିତ ପ୍ରସ୍ତର ଗୁଡ଼ିକୁ ଝୁଲାଇ ରଖିଲେ । ନିଜେ ଦକ୍ଷତାସହକାରେ ସର୍ବଦା ସେନା-ସନ୍ନିବେଶ ପର୍ଯ୍ୟବେକ୍ଷଣ କରି ସେ ମରହଟ୍ଟାମାନଙ୍କ ଆଗମନର ପ୍ରତୀକ୍ଷା କରିବାକୁ ଲାଗିଲେ ।

ମରହଟ୍ଟାମାନେ ଇତିହାସରେ କପଟ-ଯୁଦ୍ଧ ନିମନ୍ତେ ବିଖ୍ୟାତ । ସେମାନେ ସମ୍ମୁଖ-ସମରରେ କଦାପି ଶତ୍ରୁ ସଙ୍ଗେ ଯୁଦ୍ଧ କରନ୍ତି ନାହିଁ । ଏହି ନୀତି ସେମାନଙ୍କୁ ଭାରତରେ ଏକାଧିପତ୍ୟ ଦେଇଥିଲା । କିନ୍ତୁ ଯେଉଁ ଦିନ ସେମାନେ ଏ ନୀତି ପରିତ୍ୟାଗ କଲେ, ସେହି ଦିନଠାରୁ ସେମାନଙ୍କ ପତନର ଆରମ୍ଭ ହେଲା । ଯଦି ୧୭୬୩ ଖ୍ରୀଷ୍ଟାବ୍ଦରେ ସେମାନେ ପାଣିପଥ

ଯୁଦ୍ଧକ୍ଷେତ୍ରରେ ସମ୍ମୁଖ-ସମରରେ ପ୍ରବୃତ୍ତ ହୋଇ ନ ଥାନ୍ତେ, ତାହାହେଲେ ଆହମ୍ମଦଶାହ ଅବ୍ଦାଲି ଭାରତକୁ ପଦଦଳିତ କରିପାରି ନ ଥାନ୍ତେ । ଆଜି ଭାରତବର୍ଷରେ ମରହଟ୍ଟାମାନଙ୍କ ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇଥାନ୍ତା । କିନ୍ତୁ ବିଧାତାଙ୍କ ଇଚ୍ଛା କିଏ ଏଡ଼ାଏରେ ?

ମରହଟ୍ଟା ସେନାପତି ରଘୁଜୀ ଓ କପଟ-ଯୁଦ୍ଧରେ ପାରଦର୍ଶୀ ଥିଲେ । ସେ ସିନ୍ଧୋରା ନିକଟକୁ ଆସି ଦେଖିଲେ ଯେ, ସାବଧାନଭାବରେ ଗିରି-ସଙ୍କଟ ପାର ନ ହେଲେ ବିପଦ ଅବଶ୍ୟମ୍ଭାବୀ । ତାଙ୍କ ସଙ୍ଗେ ବହୁସଂଖ୍ୟକ ସୈନିକ ଥିଲେ । ତାଙ୍କ ପରିବାର ମଧ୍ୟ ତାଙ୍କ ସଙ୍ଗେ ଯୁଦ୍ଧକୁ ଆସିଥିଲେ ।

ଅରୁଣା ରଘୁଜୀରାଓଙ୍କ ଏକମାତ୍ର କନ୍ୟା । ରଘୁଜୀ ତାକୁ ଅତିଶୟ ସ୍ନେହ କରୁଥିଲେ ଏବଂ ତାକୁ ଘଡ଼ିଏ ନ ଦେଖିଲେ ତାଙ୍କ ଆଖି ଅନ୍ଧାର ହୋଇ ଯାଉଥିଲା । ପିତାଙ୍କ ସଙ୍ଗେ ରହି ଅରୁଣା ଯୁଦ୍ଧବିଦ୍ୟାରେ ନିପୁଣତା ଲାଭ କରିଥିଲା । ବୀରପ୍ରାଣା ଅରୁଣାର ହୃଦୟ ରଣ-ଯାତ୍ରାର ନାମ ଶୁଣି ନାଚି ଉଠୁଥିଲା । ରଣ-କୋଳାହଳ, ରଣ-ବାଦ୍ୟ, ରଣ-ନୃତ୍ୟ ତାହାର ହୃଦୟକୁ ପ୍ରବଳ ବେଗରେ ଆକର୍ଷଣ କରୁଥିଲା । ବୟଃପ୍ରାପ୍ତା ହେବା ପରେ ସୁଦ୍ଧା ସେ ପିତାଙ୍କ ସଙ୍ଗେ ଯୁଦ୍ଧକୁ ଯାଉଥିଲା । ଏପରି ରଣ-ସଙ୍ଗିନୀ ରଣ-ରଙ୍ଗିନୀ କନ୍ୟାର ପିତୃତ୍ୱରେ ରଘୁଜୀରାଓ ଆପଣାକୁ ସମ୍ପୂର୍ଣ୍ଣ ଗୌରବାନ୍ୱିତ ମନେ କରୁଥିଲେ । ଯେତେବେଳେ ରଘୁଜୀ ଅରୁଣା ସଙ୍ଗେ ଅଶ୍ୱାରୋହଣରେ ଯୁଦ୍ଧ କ୍ଷେତ୍ରକୁ ଯାଉଥିଲେ, ସେତେବେଳେ କନ୍ୟାର ଅପୂର୍ବ କାନ୍ତି ଦେଖି ଆପଣାକୁ ଭାଗ୍ୟବାନ ମଣୁଥିଲେ । ଅରୁଣାର ଅରୁଣ-ନିଭ-ଆନନ, ସୁଗୋଲ ବାହୁଯୁଗଳ, ପ୍ରଶସ୍ତ ଲଲାଟ, ନିତମ୍ବସ୍ପର୍ଶୀ କେଶପାଶ ରଘୁଜୀଙ୍କ ମନରେ ଦଶପ୍ରହରଣଧାରିଣୀ ମହିଷାସୁରମର୍ଦ୍ଦିନୀ ଜଗଦମ୍ବାଙ୍କ ମୂର୍ତ୍ତି ଅଙ୍କିତ କରୁଥିଲା । ତାଙ୍କ ଚକ୍ଷୁରୁ ସ୍ନେହାଶ୍ରୁ ନିର୍ଗତ ହେଉଥିଲା ।

ଯେଉଁ ଦିନ ରଘୁଜୀରାଓ ସିନ୍ଧୋରା ଗିରିସଙ୍କଟରେ ଶତ୍ରୁଦ୍ୱାରା ଆକ୍ରାନ୍ତ ହେଲେ, ସେ ଦିନ ପ୍ରଭାତରେ ପୃଥ୍ୱୀସିଂହ ଅନ୍ତରାଳରେ ଥାଇ ଅରୁଣା-ଲୋକ ବିଭାସିତ ଅରୁଣାର ମୁଖ-କମଳ ଦେଖି ଚିତ୍ରପୁତ୍ତଳିକାବତ୍ ଛିଡ଼ା ହୋଇ ରହିଲେ । ଏପରି ସ୍ୱର୍ଗୀୟ କାନ୍ତି ସେ ଜୀବନରେ କେବେ ଦେଖି ନ ଥିଲେ । ଆଜି ମରହଟ୍ଟା-ଶିବିରରେ ମୂର୍ତ୍ତିମତୀ ସୌନ୍ଦର୍ଯ୍ୟ-ରାଶି ଦେଖି ତାଙ୍କ ଚକ୍ଷୁ ଲାଖି ରହିଗଲା । ସେ ବିସ୍ମିତ ନେତ୍ରରେ ଅରୁଣାର ରୂପରାଶିର ପ୍ରଶଂସା କରିବାକୁ ଲାଗିଲେ । ଅରୁଣା-ପ୍ରାପ୍ତି-ଆଶା ତାଙ୍କ ହୃଦୟରେ ବଳବତୀ ହେଲା । ଏଣୁ କରି ଯେତେବେଳେ ଓଡ଼ିଆ ବୀରମାନେ ମରହଟ୍ଟା-ମାନଙ୍କୁ ପରାସ୍ତ କଲେ, ପୃଥ୍ୱୀସିଂହ କୌଣସି ପଦାର୍ଥକୁ ସ୍ପର୍ଶ ନ କରି କେବଳ ଅରୁଣାକୁ ଦୁର୍ଗଭିତରକୁ ଆଣିଲେ ।

ଶତ୍ରୁ-ଦୁର୍ଗରେ ଅରୁଣାର ବନ୍ଦୀ ହେବାର ସମ୍ବାଦ ଶୁଣି କନ୍ୟା-ବତ୍ସଳ ରଘୁଜୀରାଓ ଅତିଶୟ କାତର ହୋଇ ପଡ଼ିଲେ । ଯାକୁ ଘଡ଼ିଏ ନ ଦେଖିଲେ ସେ ଜଗତକୁ ବିଷମୟ ମଣୁଥିଲେ, ଆଜି ସେ ପ୍ରାଣପ୍ରତିମା ଅରୁଣା ଶତ୍ରୁହସ୍ତରେ ବନ୍ଦୀ ! ପୃଥ୍ୱୀସିଂହଙ୍କ ଏତାଦୃଶ ଆଚରଣ ଦେଖି ତାଙ୍କ ମନରେ ଅତିଶୟ କ୍ରୋଧ ଜାତ ହେଲା । ପୃଥ୍ୱୀସିଂହଙ୍କୁ ସମୁଚିତ ଶାସ୍ତି ଦେଇ କନ୍ୟାକୁ ନିଷ୍କୃତି କରିବାର ସ୍ଥିର କଲେ । ତାଙ୍କ ଆଦେଶ ଅନୁସାରେ ମରହଟ୍ଟା ଅଶ୍ୱାରୋହୀମାନେ ଦଳ ଦଳ ହୋଇ ଓଡ଼ିଆମାନଙ୍କ ରକ୍ତରେ ସ୍ୱୀୟ ତରବାରି ରଞ୍ଜିତ କରିବା ଆଶୟରେ ଗିରିସଙ୍କଟରେ ପ୍ରବେଶ କଲେ । କିନ୍ତୁ ଗିରିସଙ୍କଟ ଏତେ ସଙ୍କୀର୍ଣ୍ଣ ଯେ, କେବଳ ଅଳ୍ପ ସଂଖ୍ୟକ ସୈନିକ ଭିତରକୁ ଯାଇ ପାରୁଥିଲେ । ସଙ୍କଟର ସ୍ଥାନେ ସ୍ଥାନେ ପ୍ରଚ୍ଛନ୍ନ ଓଡ଼ିଆ ସୈନିକମାନେ ସେମାନଙ୍କୁ ଅତର୍କିତ-ଭାବରେ ଆକ୍ରମଣ କରି ପରାସ୍ତ କରୁଥିଲେ । ଗିରିଦୁର୍ଗ ମରହଟ୍ଟାମାନଙ୍କ ଦୁର୍ଗମ ହୋଇପଡ଼ିଲା । ରଘୁଜୀରାଓ ଅନେକ ଥର ସୈନ୍ୟ ପ୍ରେରଣ କଲେ;

କିନ୍ତୁ ତାହାଙ୍କର ସକଳ ଚେଷ୍ଟା ବିଫଳ ହେଲା । ମରହଟ୍ଟାମାନେ ଶତ୍ରୁ-ଦୁର୍ଗକୁ ଯିବାର ଚେଷ୍ଟା ଥାଉ, ଦୁର୍ଗକୁ ଦେଖି ସୁଦ୍ଧା ପାଇଲେ ନାହିଁ ।

ପୃଥ୍ୱୀସିଂହଙ୍କ ଅପୂର୍ବ ରଣପାଣ୍ଡିତ୍ୟ ଦେଖି ବୀରହୃଦୟ ରଘୁଜିରାଓ ତାହାଙ୍କର ଭୂୟସୀ ପ୍ରଶଂସା କରିବାକୁ ଲାଗିଲେ । ସେ ଜାଣନ୍ତି ଯେ ଓଡ଼ିଆ ସୈନ୍ୟ ଅପେକ୍ଷା ତାଙ୍କ ସୈନ୍ୟ ଅନେକ ଗୁଣରେ ବେଶି; କିନ୍ତୁ ପୃଥ୍ୱୀସିଂହ ଏପରି କୌଶଳରେ ବ୍ୟୂହ ରଚନା କରୁଥିଲେ ଯେ,ବ୍ୟୂହ ଭେଦ କରିବା ରଘୁଜିରାଓଙ୍କ ସାଧ୍ୟାତୀତ ହୋଇପଡ଼ିଲା । ସେ ଶତ ଚେଷ୍ଟାକଲେବି ଦୁର୍ଗନିକଟକୁ ଯାଇପାରିଲେ ନାହିଁ । ଦୁର୍ଗର ଏପରି ଦୁର୍ଗମତା ଦେଖି ତାଙ୍କ ମନରେ ଅତିଶୟ କଷ୍ଟହେଲା । ସେ ଯୁଦ୍ଧରେ କେବେ ପରାଜୟ ସ୍ୱୀକାର କରିନଥିଲେ, ଆଜି ପୃଥ୍ୱୀସିଂହଙ୍କ ସଙ୍ଗେ ଅବିଶ୍ରାନ୍ତ ପାଞ୍ଚମାସ କାଳ ଯୁଦ୍ଧ କରି ସୁଦ୍ଧା ସେ ଶତ୍ରୁଦୁର୍ଗ ଆକ୍ରମଣ କରିପାରିଲେ ନାହିଁ । ଏ ଅଭାବନୀୟ ଘଟନା ତାଙ୍କ ବୀରହୃଦୟକୁ ଭୟଙ୍କରଭାବରେ ଆଘାତ କଲା । ଜୀବନ ତାଙ୍କୁ ଆଉ ଭଲ ଲାଗିଲାନାହିଁ । ସବୁବେଳେ ଅରୁଣାର ମୂର୍ତ୍ତି ତାଙ୍କ ଚକ୍ଷୁସମକ୍ଷରେ ନାଚିବାକୁ ଲାଗିଲା । ଯେତେବେଳେ ରଘୁଜି ଭାବନ୍ତି ଯେ, ଅରୁଣା ଶତ୍ରୁ-ହସ୍ତରେ ବନ୍ଦିନୀ, ସେତେବେଳେ ତାଙ୍କ ହୃଦୟ ଶୋକାକୁଳ ହୋଇଯାଏ । ଅରୁଣା-ମୁକ୍ତି-ସଙ୍କଳ୍ପ ତାଙ୍କ ହୃଦୟରେ ଜାଗ୍ରତ ହୁଏ । ଜୀବନର ସକଳ ଆଶା, ସକଳ ଭରସା ବିଲୁପ୍ତ ହୋଇଯାଏ ।

ଯୁଦ୍ଧର ଏପରି ଗତି ଦେଖି ରଘୁଜିରାଓ ଠିକ୍ କଲେ ଯେ, ଏଥର ସେ ନିଜେ ଯାଇ ଗିରି-ସଙ୍କଟ ଭେଦ କରିବେ; ପ୍ରାଣର ମମତା ଭୁଲି ଶତ୍ରୁର ଆଚରଣର ପ୍ରତିହିଂସା ନେବେ । ପୃଥ୍ୱୀସିଂହ ରଘୁଜିଙ୍କ ବାସନା ଗୁପ୍ତଚରମୁଖରୁ ଶୁଣି ବିଶେଷ ସତର୍କଭାବରେ ଅବସ୍ଥାନ କରିବାକୁ ଲାଗିଲେ । ଗିରି-ସଙ୍କଟର ସ୍ଥାନେ ସ୍ଥାନେ ଓଡ଼ିଆ ସୈନିକମାନେ ପ୍ରଚ୍ଛନ୍ନଭାବରେ ରହି ଶତ୍ରୁର ଆଗମନ ପ୍ରତୀକ୍ଷା କରିବାକୁ ଲାଗିଲେ ।

# ତୃତୀୟ ପରିଚ୍ଛେଦ

## ପୃଥ୍ୱୀସିଂହ ଓ ଅରୁଣା ।

"ତା' ହୃଦକୁ ଆସେ ଯେବେ ନୈରାଶ୍ୟ ଦଉଡ଼ି,
ମାୟାବିନୀ ଆଶା ଦିଏ ତୁରନ୍ତେ ଘଉଡ଼ି ।" — କୀଚକବଧ

"ମାଧବ, ଆଜିକାଲି ଯୁଦ୍ଧର ଖବର ତ କିଛି ଜଣା ଯାଉନାହିଁ !"

"ଭାରି ଯୁଦ୍ଧ ତ ଲାଗିଛି । ମରହଟ୍ଟାମାନେ ଯେତେଥର ଆସୁଛନ୍ତି, ସେତେଥର ପରାସ୍ତ ହେଉଛନ୍ତି । ଏ ଯୁଦ୍ଧ କେବେ ସରିବ, ଭଗବାନ୍ ଜାଣନ୍ତି ।"

"ଅତି ଅଦ୍ଭୁତ ବୀରପୁରୁଷ ।"

"ମୁଁ ବି ସେଇୟା ଭାବୁଛି । ଇମିତି ଯୋଦ୍ଧା ମୁଁ କେବେ ଦେଖି-ନାହିଁ । କେତେ ମରହଟ୍ଟା ସୈନ୍ୟ ! ତଥାପି ଖାତିର୍ ନାହିଁ—ଖାଲି ଯୁଦ୍ଧ ! ଯୁଦ୍ଧ ଦେଖି ଦେଖି ମନ ବିରକ୍ତ ହୋଇଗଲାଣି ।"

"ଓଡ଼ିଆଜାତିରେ ଏପରି ବୀର ଅଛନ୍ତି ବୋଲି ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି ।"

"ତାଙ୍କ ବୀରତ୍ୱରେ ଯଦି ମୁଗ୍ଧ ହୋଇଥାଅ, ତାଙ୍କ ବୀରମୂର୍ତ୍ତିକୁ ହୃଦୟରେ ସ୍ଥାପନ କର ନା ?"

"ଛି, ମାଧବ ! ସେପରି କଥା କୁହନା ।"

"କାହିଁକି ? କହିଲେ ଦୋଷ କଣ ?"

"ସେ ବୀର ହେଲେ ସିନା ମୁଁ ତାଙ୍କୁ ହୃଦୟରେ ସ୍ଥାନ ଦେବି କାହିଁକି ?"

"ଦାସୀ ଯେତେ ନୀଚ ହେଲେ ବି ସବୁ ବୁଝିପାରେ ଯେ ! ଏ କେତେଦିନ ଏଠାରେ ରହି ମୁଁ କଣ ତୁମ ଗତିବିଧି ଦେଖୁନାହିଁ ?

ପୃଥ୍ୱୀସିଂହଙ୍କ ସଙ୍ଗେ କଥାବାର୍ତ୍ତା କଲାବେଳେ ତୁମ ମୁହଁର ରଙ୍ଗଟା ଦେଖିଛି ଯେ ! ମୁଁ ଭଲ କରି ଜାଣେ, ତାଙ୍କ ପ୍ରତି ତୁମର ଆଉ ବିରାଗ ନାହିଁ ।"

"ବିରାଗ ନ ଥିଲେ ଯେ ଅନୁରାଗ ଅଛି, ଏ କଥା କିଏ କହିଲା ?"

"ଅନ୍ତତଃ ଏ ସ୍ଥଳରେ ବିରାଗ ନ ଥିଲେ ଅନୁରାଗ ଅଛି ବୋଲି ଭାବିବାକୁ ହେବ । ଅନ୍ୟ କଥାରେ କାହିଁକି ଡେରି କରୁଛ ? ଉଦୟପୁର କୁଳର ଯଶ ହେଉଛି ସିନା ! ତୁମେ ଯଦି ପୃଥ୍ୱୀସିଂହଙ୍କୁ ପତିରୂପରେ ବରଣ କର, ସବୁ ଗୋଳ ମେଣ୍ଟିଯିବ । ଆଉ ନିରର୍ଥକ ଲୋକକ୍ଷୟ ହେବନାହିଁ ।"

"ପିତାଙ୍କ ଶତ୍ରୁକୁ, ଜାତିର ଶତ୍ରୁକୁ ମୁଁ କେବେ ହୃଦୟ ଦେବିନାହିଁ । ଯଦି ପିତା ଯୁଦ୍ଧରେ ଜୟଲାଭ କରି ମତେ ଉଦ୍ଧାର କରନ୍ତି—"

"କିନ୍ତୁ ଯଦି ଯୁଦ୍ଧରେ ପୃଥ୍ୱୀସିଂହଙ୍କ ମୃତ୍ୟୁ ହୁଏ, ତାହାହେଲେ ତୁମକୁ ଆଜୀବନ ବୈଧବ୍ୟ ଭୋଗିବାକୁ ପଡ଼ିବ ।"

"ଆଜଯାଏ ମୁଁ ଅବିବାହିତା । କାହାରି ମୃତ୍ୟୁରେ ମୋର କିଛି ଯାଏ-ଆସେ ନାହିଁ । ବରଂ—"

"ତାହାହେଲେ ଜୀବନଯାକ କୁମାରୀ ହୋଇ ରହିବ ?"

"ଫେରେ ସେହି କଥା ! ଯୁଦ୍ଧରେ କାହିଁକି କିଏ ମରିବ ? ଯୁଦ୍ଧରେ ଶତ୍ରୁ ନ ମଲେ କଣ ଜୟଲାଭ ହୁଏ ନାହିଁ ? ଯଦି ଦୁର୍ଗାଧୀଶଙ୍କୁ ପରାସ୍ତ କରି ପିତା ମତେ ଉଦ୍ଧାର କରନ୍ତି, ତାହାହେଲେ ପିତାଙ୍କ ଇଚ୍ଛା-ଅନୁସାରେ ମୋର ବିବାହ ହେବ । ହିନ୍ଦୁର ବିବାହରେ ବରକନ୍ୟାର ସ୍ୱାଧୀନ ମତ ନାହିଁ । ପିତା ସତ୍ପାତ୍ର ଦେଖି କନ୍ୟାର ବିବାହ ଦେବେ । ଯୌବନରେ ମନୁଷ୍ୟର ମନର ଗତି ଜଳଧାରା ପ୍ରାୟ । ପିତା ଯାହା କରିବେ —"

"ପିତା ଯଦି ପୃଥ୍ୱୀସିଂହଙ୍କ ସଙ୍ଗେ ତୁମର ବିବାହ ନ ଦିଅନ୍ତି ।"

"ସେ କଥା ଥାଉ । ଯୁଦ୍ଧର ଖବର କହ । ଯୁଦ୍ଧ ପାଇଁ ମୋ ମନ

ଘାଣ୍ଠି ହେଉଛି । ପାଞ୍ଚମାସକାଳ ଯୁଦ୍ଧ ଲାଗିଲାଣି । ମରହଟ୍ଟାମାନଙ୍କ ପକ୍ଷରୁ କେତେ ବୀର ଧରାଶାୟୀ ହେଲେଣି ! ନିଜ ଜାତିର ଏପରି ଦୁରବସ୍ଥା ଦେଖି କିଏ ସହି ପାରିବ ? ମୋର ଇଚ୍ଛା, ମୁଁ ନିଜେ ଯାଇ ଯୁଦ୍ଧ କରନ୍ତି ?"

"କିନ୍ତୁ ପୃଥ୍ୱୀସିଂହ ଛାଡ଼ି ଦେବେ କି ?"

"ସେ ମୁକ୍ତି ଦେଲେ ସୁଦ୍ଧା ମୁଁ ଯିବିନାହିଁ । ପିତା ନିଜେ ଆସି ଉଦ୍ଧାର କରିବେ ।"

"ଯଦି କରି ନପାରନ୍ତି ?" ଏହା କହି ପୃଥ୍ୱୀସିଂହ ପ୍ରକୋଷ୍ଠମଧ୍ୟରେ ପ୍ରବେଶ କଲେ । ପୃଥ୍ୱୀସିଂହଙ୍କୁ ସେପରି ଅପ୍ରତ୍ୟାଶିତଭାବରେ ସେଠାରେ ଉପସ୍ଥିତ ହେବାର ଦେଖି ସେମାନେ ଟିକିଏ ଘାବରିଗଲେ । କିନ୍ତୁ ଆଜ ଆଉ ଦୁଇପରି ସେମାନଙ୍କ ସଙ୍କୋଚ ନାହିଁ । ଦୁର୍ଗରେ ଅନେକ ଦିନ ରହି ପୃଥ୍ୱୀସିଂହଙ୍କ ସଙ୍ଗେ ସେମାନଙ୍କ ଘନିଷ୍ଠତା ଜନ୍ମିଅଛି । ଅରୁଣା ତାଙ୍କ ସଙ୍ଗେ କଥାବାର୍ତ୍ତା କରିବା ପାଇଁ ଆଉ ଲଜ୍ଜା ବୋଧ କରୁନାହିଁ । ସେ ପୃଥ୍ୱୀସିଂହଙ୍କୁ ଭଲକରି ଜାଣେ । ପୃଥ୍ୱୀସିଂହ ଉଦାର ଓ ମହାନ୍ । ସେ ଶତ୍ରୁସଙ୍ଗେ ମଧ୍ୟ ଶିଷ୍ଟାଚରଣ କରନ୍ତି । ତାଙ୍କ ମଧୁର ଆଳାପରେ ମୁଗ୍ଧ ହୋଇ ଦିନେ ଦିନେ ଅରୁଣା ଅନେକ ବେଳଯାଏ ତାଙ୍କ ସଙ୍ଗେ କଥାବାର୍ତ୍ତା କରେ । ଏଣୁ କରି ତାଙ୍କ କଥା ଶୁଣି ନିର୍ବିକାର ଚିତ୍ତରେ କହିଲା, "ଯଦି ପିତାଙ୍କ ବାହୁରେ ବଳ ନାହିଁ, ଯଦି ମରହଟ୍ଟାଜାତି ହୀନବଳ ହୋଇଗଲାଣି, ତାହାହେଲେ ମୁଁ ମୁକ୍ତି ପାଇପାରିବି ନାହିଁ । କିନ୍ତୁ ଏଠାରେ ଆଉ ଆପଣ ମତେ ଦେଖି ପାରିବେ ନାହିଁ । ହିନ୍ଦୁରମଣୀ ନିକଟରେ ସବୁବେଳେ ବିଷ ଥାଏ ।"

"ନା, ମୁଁ ଆଉ ରଘୁନାଥଙ୍କ ସଙ୍ଗେ ଯୁଦ୍ଧ କରିବି ନାହିଁ, ତାଙ୍କୁ ଯଥେଷ୍ଟ କଷ୍ଟ ଦେଇ ସାରିଛି । ତୁମ୍ଭଙ୍କୁ ନେଇ ତାଙ୍କ ହସ୍ତରେ ସମର୍ପଣ କରି ଆସିବି । ପରେ ଯଦି ଯୁଦ୍ଧ ହୁଏ, ଦେଖାଯିବ ।"

"ଆପଣ ଯଦି ପରାଜୟ ସ୍ୱୀକାର କରନ୍ତି, ତାହାହେଲେ ମୁଁ ଦୁର୍ଗରୁ ଯିବି । ସ୍ୱଜାତିର ମୁଖରେ କଳଙ୍କ ଲେପି ମୁଁ ସ୍ୱାଧୀନତା ପାଇବାକୁ ଚାହେଁ ନା ।"

"ଧନ୍ୟ ମରହଟ୍ଟା ରମଣୀ! ଆଜ ତୁମ୍ଭ ନିକଟରେ ମୁଁ ପରାଜୟ ସ୍ୱୀକାର କରୁଛି । ପୂର୍ବ ଜନ୍ମର ସୁକୃତିବଳରେ ତେଜସ୍ୱିନୀ ରମଣୀଙ୍କ ସଙ୍ଗେ ମୋର ସାକ୍ଷାତ୍କାର ହୋଇଛି ; କିନ୍ତୁ ରଘୁଜୀରାଓଙ୍କ ବିରୁଦ୍ଧରେ ମୋର ଖଡ୍ଗ ସର୍ବଦା ନିଷ୍କୋଷିତ । ଏ ଦେହରେ ପ୍ରାଣ ଥିବାଯାଏ ମୁଁ କଦାପି ତାଙ୍କ ସମକ୍ଷରେ ନତମସ୍ତକ ହେବିନାହିଁ । ଜୟ— ପରାଜୟ ଈଶ୍ୱରଙ୍କ ଇଚ୍ଛାଧୀନ--ମୁଁ ଯୁଦ୍ଧ କରିବି । ଯୁଦ୍ଧରେ ଶତ୍ରୁକୁ ପରାସ୍ତ କରି ମା' ସମଲେଶ୍ୱରୀଙ୍କ ବିଜୟ-ପତାକା ବାରପାହାଡର ଶିଖର-ଦେଶରେ ଉଡାଇବି । ଏଇଟା ଔଡ୍ରଆଜାତିର ପଣ ।"

ପୃଥ୍ୱୀସିଂହଙ୍କ କଥା ଶୁଣି ଅରୁଣା ନିର୍ବାକ୍, ନିସ୍ପନ୍ଦଭାବରେ ତାଙ୍କ ମୁଖକୁ ଅନାଇଲା । ପୃଥ୍ୱୀସିଂହଙ୍କ ମୁଖ ବର୍ତ୍ତମାନ ତେଜୋମୟ । ଅରୁଣା ଅନେକ ଥର ଯୁଦ୍ଧକ୍ଷେତ୍ରକୁ ଯାଇଥିଲା, ଅନେକ ବୀର ଦେଖିଥିଲା; କିନ୍ତୁ ଏପରି ତେଜ, ଏପରି ଉଦାରତା ସେ କୌଣସିଠାରେ ଦେଖି ନ ଥିଲା । ଦୁର୍ଗକୁ ଆସିଲାଦିନୁ ସେ ସମ୍ବଲପୁରକୁ ତୀର୍ଥକ୍ଷେତ୍ର ମଣି ମା' ସମ୍ଲେଶ୍ୱରୀଙ୍କ ଚରଣପ୍ରାନ୍ତରେ ଆନ୍ତରିକ ଭକ୍ତି ଅର୍ପଣ କରୁଥିଲା । ସମ୍ବଲପୁରର ଜଳରେ, ସମ୍ବଲପୁରର ପବନରେ, ପର୍ବତରେ, ନଦୀରେ, ବୃକ୍ଷରେ ସେ ଗୋଟିଏ ସ୍ୱର୍ଗୀୟ ଦୃଶ୍ୟର ସତ୍ତା ଅନୁଭବ କରି ମୁଗ୍ଧ ହୋଇଗଲା । ପର୍ବତମୟ ମହାରାଷ୍ଟ୍ର ଦେଶରେ ସୁଦ୍ଧା ସେ ଏ ଦୃଶ୍ୟ ଦେଖିନାହିଁ । ହାୟ, ମା' ସମ୍ବଲ-ପୁର ! ଆଜ ସେ ଗୌରବ କାହିଁ ! ସେ ବୀରତ୍ୱ କାହିଁ !

ଅରୁଣାକୁ ନିରୁତ୍ତର ଦେଖି ପୃଥ୍ୱୀସିଂହ ପୁନର୍ବାର କହିଲେ, "କିନ୍ତୁ, ସେନାପତିନନ୍ଦିନି, ଯଦି ଦୁର୍ଗରେ ରହିବାକୁ ତୁମ୍ଭର କଷ୍ଟ ହେଉଥାଏ,

ତାହାହେଲେ ଏହି ମୁହୂର୍ତ୍ତରେ ତୁମ୍ଭଙ୍କୁ ପିତୃସମୀପରେ ସ୍ଥିତ ଆସିବ ।”

“ନା, ଦୁର୍ଗରେ ମୁଁ ଅତି ସୁଖରେ ଅଛି । ପିତୃ-ଶିବିରକୁ ଯିବ ନାହିଁ ।”

“ମୁଁ ଶୁଣିଛି, ତୁମେ ପିତାଙ୍କ ସଙ୍ଗେ ଯୁଦ୍ଧକ୍ଷେତ୍ରକୁ ଯାଅ । ଯୁଦ୍ଧର ନାମ ଶୁଣିଲେ ତୁମ ହୃଦୟ ଉତ୍ସାହରେ ନାଚଉଠେ । ଏଥର ମୋ ସଙ୍ଗେ ତୁମକୁ ଯୁଦ୍ଧକ୍ଷେତ୍ରକୁ ଯିବାକୁ ହେବ । ଯୁଦ୍ଧକ୍ଷେତ୍ରରେ ତୁମର ରଣ-ରଙ୍ଗିଣୀ ମୂର୍ତ୍ତି ଦେଖି ସୈନିକମାନେ ଅପୂର୍ବ ଉତ୍ସାହରେ ମାତି ଯୁଦ୍ଧ କରିବେ ।”

“ଦୁର୍ଗାଧିପଙ୍କ ଯେପରି ଅଭିରୁଚି । ବୀରପୁରୁଷଙ୍କ ସମର-ସଙ୍ଗିନୀ ହେବା ସୌଭାଗ୍ୟର କଥା । ବୀରପୁରୁଷଙ୍କ ସଙ୍ଗେ ରହି ଯୁଦ୍ଧ ଦେଖିବ —ଯୁଦ୍ଧ ଦେଖି ନୟନ ସାର୍ଥକ କରିବ । ଏଥିରୁ ବଳି ଅଉ ସୁଖ କଣ ହୋଇପାରେ ?”

“ଶୁଣି ସୁଖୀ ହେଲି । ଅରୁଣା-ମୂର୍ତ୍ତି ପ୍ରାଚୀଦିଗରେ ଅରୁଣରୂପେ ଉଦିତ ନ ହେବାଯାଏ ଏ ଯୁଦ୍ଧର ଅବସାନ ହେବନାହିଁ ।”

ଏହା କହି ଉପସ୍ଥିତ କାର୍ଯ୍ୟ ପର୍ଯ୍ୟବେକ୍ଷଣ କରିବା ସକାଶେ ପୃଥ୍ୱୀ-ସିଂହ ପ୍ରକୋଷ୍ଠରୁ ବହିର୍ଗତ ହେଲେ । ଅରୁଣା ସ୍ଥିର ନେତ୍ରରେ ତାଙ୍କ ବୀରମୂର୍ତ୍ତି ଦେଖି ମନୋମଧ୍ୟରେ ତାଙ୍କୁ ଶତବାର ଧନ୍ୟବାଦ ଦେଲା । ପୃଥ୍ୱୀସିଂହଙ୍କ ସଙ୍ଗେ କଥାବାର୍ତ୍ତା କରୁଥିବାଯାଏ ସେ ନୟନ-ସମକ୍ଷରେ ସ୍ୱର୍ଗର ଦୃଶ୍ୟ ଦେଖୁଥିଲା ! ପୃଥ୍ୱୀସିଂହ ଅପସାରିତ ହୁଅନ୍ତେ ତାହାର ହୃଦୟ ବ୍ୟାକୁଳ ହୋଇ ପଡିଲା । ସେ ନୀରବରେ ବାତାୟନ ସମୀପକୁ ଯାଇ ବାହାରରେ ପ୍ରକୃତିର ସୌନ୍ଦର୍ଯ୍ୟ ଦେଖିବାକୁ ଲାଗିଲା ।

## ଚତୁର୍ଥ ପରିଚ୍ଛେଦ

### ମିଳନ ।

"Till pride be quelled and love be free."
—Scott.

ଆଜି ରଘୁଜୀରାଓ ନିଜେ ସୈନିକମାନଙ୍କୁ ସଙ୍ଗରେ ନେଇ ଯୁଦ୍ଧ-କ୍ଷେତ୍ରକୁ ଆସିଛନ୍ତି । ତାହାଙ୍କର ଏକମାତ୍ର ଲକ୍ଷ୍ୟ—"ମନ୍ତ୍ରର ସାଧନ ଅବା ଶରୀର ପାତନ !" ଏଥର ସେ ଶତ୍ରୁକୁ ପରାସ୍ତ କରିବେ, ଅଥବା ନିଜ ରକ୍ତରେ ସମର-ପ୍ରାଙ୍ଗଣକୁ ପ୍ଲାବିତ କରି ସମର-ସ୍ପୃହା ମେଣ୍ଟାଇବେ । ଜୀବନ ପ୍ରତି ଆଉ ତାଙ୍କର ମମତା ନାହିଁ । ମରହଟ୍ଟାଜାତିକୁ ଓଡ଼ିଆମାନଙ୍କ ହସ୍ତରେ ଅପମାନିତ ଦେଖି ସେ କିପରି ପିଣ୍ଡରେ ପ୍ରାଣ ଧରିବେ ? ସ୍ୱଜାତିର ମାନରକ୍ଷା କରିବା ସକାଶେ ଏଥର ସେ ଯୁଦ୍ଧକୁ ବାହାରିଛନ୍ତି । ପ୍ରାଣପ୍ରତିମା ଅରୁଣା ଶତ୍ରୁ-ଦୁର୍ଗରେ ବନ୍ଦିନୀ ! ମରହଟ୍ଟାଜାତିର ଗୌରବ-ଲକ୍ଷ୍ମୀ ଶତ୍ରୁର ପଦଦଳିତା ! ଆଜି ସେ ପ୍ରାଣର ବିନିମୟରେ ସ୍ୱଜାତିର ମାନ ରଖିବେ । ଯୁଦ୍ଧକ୍ଷେତ୍ରରେ ଦେଖିବେ, ଓଡ଼ିଆଜାତି କିପରି ଯୁଦ୍ଧ କରିପାରେ ।

ରଘୁଜୀରାଓ ନିଜ ବିରାଟ ବାହିନୀକୁ ବହୁଭାଗରେ ବିଭକ୍ତ କରି ନାନା ଦିଗକୁ ସୈନ୍ୟ ପଠାଇଲେ । ତାଙ୍କ ଇଚ୍ଛା, ଦୁର୍ଗକୁ ଚତୁର୍ଦ୍ଦିଗରୁ ଆକ୍ରମଣ କରି ଶତ୍ରୁର ବଳ ପରୀକ୍ଷା କରିବେ । ଏଣୁକରି ସେ ସୈନିକମାନଙ୍କୁ ବିଭିନ୍ନ ଦିଗକୁ ପ୍ରେରଣ କଲେ । ନିଜେ ପ୍ରାୟ ବିଂଶତି ସହସ୍ର ଅଶ୍ୱାରୋହୀ ସୈନିକ ନେଇ ଗିରିସଙ୍କଟ ମଧ୍ୟରେ ପ୍ରବେଶ କଲେ । ମରହଟ୍ଟାମାନଙ୍କ " ବମ୍ ବମ୍ ମହାଦେଓ " ରବରେ ସିଂଘୋର ଗିରିସଙ୍କଟ ବିକମ୍ପିତ ହେବାକୁ ଲାଗିଲା । ସେମାନଙ୍କ ତେଜରେ ଚତୁର୍ଦ୍ଦିଗ ବିଭ୍ରମିତ ହୋଇଗଲା ।

ପୃଥ୍ୱୀସିଂହ ଅଲକ୍ଷିତଭାବରେ ଥାଇ ମରହଟ୍ଟାମାନଙ୍କ ଗତିବିଧି ନିରୀକ୍ଷଣ କରୁଥିଲେ । ରଘୁଜୀରାଓଙ୍କ ଉଦ୍ୟମ ଦେଖି ସେ ଦୂରବର୍ତ୍ତୀ ପର୍ବତର

ସ୍ଥାନେ ସ୍ଥାନେ ସୈନ୍ୟମାନଙ୍କୁ ପ୍ରଚ୍ଛନ୍ନଭାବରେ ରଖିଲେ ଏବଂ ନିଜେ ଅଳ୍ପ-ସଂଖ୍ୟକ ସୈନ୍ୟ ନେଇ ପର୍ବତର ଚତୁର୍ଦ୍ଦିଗରେ ପରିକ୍ରମଣ କରିବାକୁ ଲାଗିଲେ । ଓଡ଼ିଆ ସୈନ୍ୟମାନେ ଲୁକ୍କାୟିତଭାବରେ ଥାଇ ଅପ୍ରତ୍ୟାଶିତ-ଭାବରେ ମରହଟ୍ଟାମାନଙ୍କୁ ଆକ୍ରମଣ କରନ୍ତି ଏବଂ ସେମାନଙ୍କୁ ସମ୍ପୂର୍ଣ୍ଣରୂପେ ପରାସ୍ତ କରି ପଛକୁ ଘୁଞ୍ଚାଇ ଦିଅନ୍ତି । ଏପରି ବାରମ୍ବାର ଆକ୍ରାନ୍ତ ହୋଇ ଚତୁର୍ଦ୍ଦିଗକୁ ପ୍ରେରିତ ମରହଟ୍ଟାମାନେ ହତାହତ ହେବାକୁ ଲାଗିଲେ । ସେମାନଙ୍କ ସକଳ ଆଶାଭରସା ବିଲୁପ୍ତ ହେଲା । ଜୟ-ଶ୍ରୀ ସେମାନଙ୍କୁ ଛାଡ଼ି ବହୁଦୂରକୁ ଚାଲିଗଲା ।

କିନ୍ତୁ ରଘୁଜିରାଓଙ୍କର ସେଥିପ୍ରତି ଲକ୍ଷ ନାହିଁ । ଆଜି ତାଙ୍କ ଜୀବନ ମାୟା-ମମତା-ବିହୀନ । ନିର୍ବାସିତ ବିଜୟ-ଲକ୍ଷ୍ମୀଙ୍କୁ ଶତ୍ରୁର କରାଳ କବଳରୁ ମୁକ୍ତ କରି ଆଣିବାନିମନ୍ତେ ସେ ପ୍ରାଣ ସୁଦ୍ଧା ଦେବାକୁ ପଶ୍ଚାତ୍‌ପଦ ନୁହନ୍ତି । ପରାଜିତ, ଅପମାନିତ ଜୀବନ ଘେନି ସେ କଦାପି ପ୍ରତ୍ୟାବୃତ୍ତ ହେବେନାହିଁ । ଏଥିପାଇଁ ସେ ନିର୍ଭୀକଭାବରେ ଗନ୍ତବ୍ୟ ପଥରେ ଅଗ୍ରସର ।

ବହୁ ସାବଧାନତା ସହକାରେ ରଘୁଜିରାଓ ଗିରିସଙ୍କଟ ମଧ୍ୟରେ ପ୍ରବେଶ କଲେ । ସେ ଏପରି ସତର୍କଭାବରେ ଯିବାକୁ ଲାଗିଲେ ଯେ, ପୃଥ୍ୱୀସିଂହ ତାଙ୍କ ଗତି ଆଦୌ ଲକ୍ଷ କରିପାରିଲେ ନାହିଁ । ରଘୁଜିରାଓ ଅବାଧରେ ଗିରିସଙ୍କଟ ଉତ୍ତୀର୍ଣ୍ଣ ହୋଇ ଗିରିଦୁର୍ଗ ନିକଟରେ ଉପନୀତ ହେଲେ । ପୃଥ୍ୱୀସିଂହ ବର୍ତ୍ତମାନ ଦେଖିଲେ ଯେ, ବିଷମ ସମସ୍ୟା ଉପସ୍ଥିତ । କିନ୍ତୁ ତଥାପି ତାଙ୍କ ମନ ନିର୍ଭୀକ ଓ ଅଟଳ । ରଘୁଜିରାଓଙ୍କୁ ନିକଟବର୍ତ୍ତୀ ଦେଖି ସେ ବିପୁଳ ଆୟୋଜନରେ ତତ୍ପରହେଲେ । ଦୁର୍ଗ-ପ୍ରାଚୀରରେ ପୂର୍ବବତ୍ ବହୁ ପ୍ରସ୍ତର ଲତା-ଗ୍ରଥିତ ହୋଇଝୁଲିଗଲା । ସମଗ୍ର ଓଡ଼ିଆ-ସେନା ଏକତ୍ରିତ ହୋଇ ଦୁର୍ଗମଧ୍ୟରେ ଅବସ୍ଥାନ କଲେ ।

ଦୁର୍ଗ ନିକଟକୁ ଯାଇ ମରହଟ୍ଟାମାନେ ଅବିଶ୍ରାନ୍ତ ଗୋଳାବର୍ଷଣ କରିବାକୁ ଲାଗିଲେ । ସେମାନଙ୍କ 'ବମ୍ ବମ୍ ମହାଦେଓ' ରବରେ ଦୁର୍ଗବାସିମାନେ

ଶଙ୍କା ପାଇବାକୁ ଲାଗିଲେ । କିନ୍ତୁ ପୃଥ୍ୱୀସିଂହ ନାଃଶଙ୍କ ଓ ସତର୍କ । ସେ କୌଶଳରେ ସୈନ୍ୟମାନଙ୍କୁ ଦୁର୍ଗପ୍ରାଚୀର ଉପରେ ସନ୍ନିବିଷ୍ଟ କଲେ । ମରହଟ୍ଟାମାନଙ୍କ ଗୋଳାବର୍ଷଣରେ ବହୁସଂଖ୍ୟକ ବୀର ଧରାଶାୟୀ ହେଲେ । କିନ୍ତୁ ଓଡିଆମାନଙ୍କ ଜୀବନ ପ୍ରତି ଭ୍ରୂକ୍ଷେପ ନାହିଁ । ସେମାନେ "ଜୟ ସମଲାଇର ଜୟ" ରବ କରି ଲତା-ଗ୍ରଥିତ ପ୍ରସ୍ତରସବୁ ମରହଟ୍ଟାମାନଙ୍କ ଉପରେ ନିକ୍ଷେପ କରିବାକୁ ଲାଗିଲେ । ସେ ପ୍ରସ୍ତରର ଆଘାତ ମରହଟ୍ଟା-ମାନେ ସମ୍ଭାଳି ପାରିଲେ ନାହିଁ । ଯୁଦ୍ଧରୁ ପଛଘୁଞ୍ଚା ଦେଇ ପ୍ରାଣଭୟରେ ପଳାଇବାକୁ ଲାଗିଲେ । ଓଡିଆମାନେ ପ୍ରାଚୀର ଡେଇଁ "ଜୟ ସମଲାଇର ଜୟ" ରବ କରି ସେମାନଙ୍କର ପଶ୍ଚାଦ୍ଧାବନ କଲେ ।

ପର୍ବତ ଉପରେ ଓଡିଆ ଓ ମରହଟ୍ଟାମାନଙ୍କ ମଧ୍ୟରେ ଭୀଷଣ ସମ୍ମୁଖ-ସଂଗ୍ରାମ ଆରମ୍ଭ ହେଲା । ଉଭୟ ପକ୍ଷରୁ ଅନେକ ହତାହତ ହେଲେ; କିନ୍ତୁ ମରହଟ୍ଟାମାନଙ୍କର ଆଉ ଉତ୍ସାହ ନାହିଁ । ସେମାନଙ୍କୁ ଅଗତ୍ୟା ପରାଜୟ ସ୍ୱୀକାର କରିବାକୁ ପଡ଼ିଲା ।

ପୃଥ୍ୱୀସିଂହ ଶତ୍ରୁ-ବ୍ୟୂହରେ ପ୍ରବେଶ କରି ଭୟଙ୍କର ଯୁଦ୍ଧ ଆରମ୍ଭ କଲେ । ତାଙ୍କ ଅଦମ୍ୟ ପରାକ୍ରମରେ ମରହଟ୍ଟା-ବାହିନୀ ଛିନ୍ନବିଛିନ୍ନ ହୋଇଗଲା । ତାଙ୍କ ବୀର୍ଯ୍ୟ ସମକ୍ଷରେ ସ୍ୱୟଂ ରଘୁଜୀରାଓଙ୍କ ଉତ୍ସାହ ମଧ୍ୟ ନତମସ୍ତକ ହେଲା । * ପୃଥ୍ୱୀସିଂହ ତରବାରି ଉତ୍ତୋଳନ କରି ତାଙ୍କ ପ୍ରତି

---

* "Akbar Raya, the minister of Abhaya Singh, thinking this a good opportunity to strengthen the Sambalpur fort, caused the boatmen to scuttle the boats in deep water, so that the guns all sunk, and many Marhatta artillery-men were drowned. He then recovered eight of the guns and mounted them on the fort. The Raja of Nagpur sent a strong ditachment to avenge the insult and recover the guns; but it was repulsed with slaughter.."

P. 23. Bengal District Gazeteer ( Sambalpur )

ସିଂହ-ବିକ୍ରମରେ ଧାବମାନ ହୁଅନ୍ତେ, ପଛରୁ କିଏ ଆସି ତାଙ୍କ ହସ୍ତକୁ ଦୃଢଭାବରେ ମୁଷ୍ଟିବଦ୍ଧ କଲା । ପୃଥ୍ୱୀସିଂହ ପଛକୁ ଅନାଇ ଦେଖିଲେ ଯେ, ଜଣେ ପ୍ରହରଣ-ଧାରଣୀ ମୁକ୍ତକେଶା ରମଣୀ-ମୂର୍ତ୍ତି ତାଙ୍କ ପଶ୍ଚାତ୍‌ଭାଗରେ ଦଣ୍ଡାୟମାନା । ତାହାର ସେ ରୂପ, ସେ ତେଜ ଦେଖି ତାଙ୍କ ହସ୍ତ ଆଉ ଅଗ୍ରସର ହୋଇ ପାରିଲା ନାହିଁ । ସେ ନୀରବ ଓ ନିସ୍ପନ୍ଦ ଭାବରେ ଛିଡ଼ା ହୋଇ ଉକ୍ତ ରମଣୀ-ମୂର୍ତ୍ତିକୁ ଦେଖିବାକୁ ଲାଗିଲେ । ରଘୁଜିରାଓ ମଧ୍ୟ ତାଙ୍କ ଜୀବନ-ରକ୍ଷା-କାରିଣୀକୁ ଦେଖି ବିସ୍ମୟାଭିଭୂତ ହୋଇଗଲେ । ତାଙ୍କ ମୁଖରୁ ବାକ୍-ନିଷ୍ପତ୍ତି ହୋଇ ପାରିଲା ନାହିଁ । ଉଭୟ ପକ୍ଷର ସୈନିକମାନେ ସେ ରଣରଙ୍ଗିଣୀ ମୂର୍ତ୍ତି ଦେଖି ପଛକୁ ଘୁଞ୍ଚିଗଲେ । ସେ ଦେବୀ ନା ମାନବୀ, କେହି ଠିକ୍ କରି ପାରିଲେ ନାହିଁ । ଉକ୍ତ ରମଣୀ ପୃଥ୍ୱୀସିଂହଙ୍କୁ କହିଲା "ଧନ୍ୟ ବୀର ! ଏ ଅଦ୍ଭୁତ ସାହସ ଏଥର ମୁଁ ପ୍ରଥମ ଦେଖିଲି । କିନ୍ତୁ ହେଲା । ଆଉ ନାହିଁ । ଯଥେଷ୍ଟ ହୋଇ ସାରିଛି । ଆଉ ଯୁଦ୍ଧରେ ପ୍ରୟୋଜନ ନାହିଁ । ଏତାଙ୍କୁ ମୁକ୍ତ ଦିଅନ୍ତୁ ।" ପରେ ରଘୁଜିରାଓଙ୍କ ନିକଟକୁ ଯାଇ କହିଲା, "ପିତା, ଦାସୀର ଅପରାଧ କ୍ଷମା କରନ୍ତୁ । ଦାସୀ ଆପଣଙ୍କୁ ଅନେକ କଷ୍ଟ ଦେଇଛି । ଦାସୀପାଇଁ ମରହଟ୍ଟା ଜାତିକୁ ପରାଜୟ ସ୍ୱୀକାର କରିବାକୁ ପଡ଼ିଛି । କିନ୍ତୁ ଏ ବୀର ପୁରୁଷ—" ସେ ଆଉ କହି ପାରିଲା ନାହିଁ । ତାର ବାକ୍‌ଶକ୍ତି ରୁଦ୍ଧ ହୋଇଗଲା ଓ ଲଜ୍ଜାରେ ମୁଖ ଲାଲ ହୋଇଗଲା ।

ଏ ଗରିମାମୟ ଦୃଶ୍ୟ ଦେଖି ରଘୁଜିଙ୍କ ହୃଦୟ ଦ୍ରବୀଭୂତ ହୋଇଗଲା । ସେ ଦୁହିତାକୁ ଆଲିଙ୍ଗନ କରି କହିଲେ "ଅରୁଣା ! ମା !" ଆଉ କହିପାରିଲେ ନାହିଁ । ତାଙ୍କ ଚକ୍ଷୁରୁ ଅବିରଳ ସ୍ନେହାଶ୍ରୁ ନିର୍ଗତ ହେବାକୁ ଲାଗିଲା । ପରେ ଆତ୍ମସମ୍ବରଣ କରି ଅରୁଣାର ମୁଖର ଭାବ ଦେଖି ସେ ସବୁ ବୁଝିପାରିଲେ । ଅରୁଣାର ହସ୍ତ ଧରି ପୃଥ୍ୱୀସିଂହଙ୍କ ନିକଟକୁ ଯାଇ କହିଲେ, "ବୀରଶ୍ରେଷ୍ଠ, ତୁମ୍ଭର ବୀର୍ଯ୍ୟରେ ମୁଁ ମୁଗ୍ଧ ହୋଇଛି । ମୁଁ ତୁମ୍ଭର ଶତ୍ରୁ—

ଯୁଦ୍ଧରେ ପରାସ୍ତ । ତଥାପି ତୁମ୍ଭର ବୀର୍ଯ୍ୟ ଦେଖି ତୁମ୍ଭପ୍ରତି ମୋର ଆନ୍ତରିକ ଶ୍ରଦ୍ଧା ଜାତ ହୋଇଛି । ଏ ଶ୍ରଦ୍ଧାର ପୁରସ୍କାର ସ୍ୱରୂପ ମୋର ପ୍ରାଣର ପ୍ରାଣ ଅରୁଣାକୁ ତୁମ ହସ୍ତରେ ସମର୍ପଣକଲି । ବୀର-କନ୍ୟା ବୀର-ପତ୍ନୀ ହେଉ ।" ଏହା କହି ସେ ପୃଥ୍ୱୀସିଂହଙ୍କ ହସ୍ତରେ ଅରୁଣାର ହସ୍ତ ସଂସ୍ଥାପିତ କଲେ । ଉଭୟ ପକ୍ଷରୁ "ବମ୍ ବମ୍ ମହାଦେଓ" ଓ "ଜୟ ସମଲଈର ଜୟ" ରବ ଉଠି ସେ ନୀରବ ଅରଣ୍ୟକୁ ପ୍ରତିଧ୍ୱନିତ କଲା । ପୃଥ୍ୱୀସିଂହ ନତମସ୍ତକ ହୋଇ ଏ ସବୁ ଶ୍ରବଣ କଲେ । ରଘୁଜିରାଓ ତାଙ୍କୁ ଆଲିଙ୍ଗନ-ପାଶରେ ଆବଦ୍ଧ କରି ତାଙ୍କ ନିକଟରୁ ବିଦାୟ ଗ୍ରହଣକଲେ, ଏବଂ ସୈନିକମାନଙ୍କୁ ସଙ୍ଗରେ ନେଇ "ବମ୍ ବମ୍ ମହାଦେଓ" ରବ କରି ଅରଣ୍ୟ ମଧ୍ୟରେ ବିଲୀନ ହୋଇଗଲେ ।



# ରୂପର ମୂଲ୍ୟ

## ପ୍ରଥମ ପରିଚ୍ଛେଦ

ବଦାସ୍ତୁ ।

"ତନ୍ମସ୍ଥ ସିଦ୍ଧ୍ୟୈ କୁରୁ ଦେବ-କାର୍ଯ୍ୟମ୍ ।"

—କୁମାରସମ୍ଭବ ।

ସମ୍ବଲପୁରର ପଶ୍ଚିମ ଦିଗରେ ସହରରୁ ପ୍ରାୟ ଏକ ମାଇଲ ଦୂରରେ ମହଲିଆ ମୁହାଣ । ଏଠାରେ ଗୋଟିଏ ପ୍ରାଚୀନ ମନ୍ଦିର ଅଛି । କଳ-ନାଦିନୀ ତଟୋପୂଲା ମନ୍ଦିରର ଚରଣ ପ୍ରକ୍ଷାଳିତ କରି ଶିଳା-ବନ୍ଧୁର ମାର୍ଗରେ ଅଗ୍ରସର । ଲୋକେ କହନ୍ତି—ମନ୍ଦିରରେ ପ୍ରଚୁର ଧନରତ୍ନ ଓ ଅସ୍ତ୍ରଶସ୍ତ୍ର ଲୁକ୍କାୟିତ ଅଛି । ଏ ଉକ୍ତିର ସତ୍ୟତା ନିରୂପିତ କରିବାକୁ ଆମ୍ଭମାନଙ୍କର ଶକ୍ତି ନାହିଁ । ଆଜଯାଏ କେହି ଏ ବିଷୟରେ ଅନୁସନ୍ଧାନ କରି ନାହାନ୍ତି—କରିବାର ମଧ୍ୟ ସୂଚନା ମିଳୁନାହିଁ । ଏବମ୍ବିଧ ପ୍ରତ୍ନ-ତତ୍ତ୍ୱ-ସଂଗ୍ରହ ଓଡ଼ିଶାର ଆଧୁନିକ ଜଳବାୟୁର ପ୍ରତିକୂଳ ପରି ! ସେ ଯାହାହେଉ, ମନ୍ଦିରକୁ ଲୋକେ ନୀଳମାଧବଙ୍କ ମନ୍ଦିର ବୋଲି କହନ୍ତି । ଏଠାରେ ଦେବ-ପୂଜାର କୌଣସି ଚିହ୍ନ ପରିଲକ୍ଷିତ ହୁଏନାହିଁ—ମନ୍ଦିରରେ କୌଣସି ଦେବ-ବିଗ୍ରହ ମଧ୍ୟ ନାହିଁ । ମନ୍ଦିରର ଏପରି ନାମକରଣ କାହିଁକି ହେଲା, ପୁରାତତ୍ତ୍ୱଜିଜ୍ଞାସୁ-ମାନଙ୍କ ଅନୁସନ୍ଧେୟ । ପୁଣି ଏଠାରେ କୌଣସି ନଦୀର ସଙ୍ଗମ-ସ୍ଥଳ ନଥିଲେ ସୁଦ୍ଧା ସ୍ଥାନଟିର ନାମ ମହଲିଆ ମୁହାଣ କାହିଁକି ହୋଇଅଛି ?

ବୋଧହୁଏ କାଳକ୍ରମେ ସେ ନଦୀ ଲୋପ ପାଇଅଛି ; କିମ୍ବା ଦୁର୍ଗରକ୍ଷାର୍ଥ ସମ୍ବଲପୁରର ନରପତିମାନେ ନଦୀର ଗତିକୁ ପରିବର୍ତ୍ତିତ କରିଥିବେ । ନଦୀ-ସଙ୍ଗମ-ସୂଚକ ପ୍ରଶସ୍ତତା କେବଳ ମୁହାଣ-ନାମର ସାର୍ଥକତା ସମ୍ପାଦନ କରୁଅଛି ।

ଜଗତରେ ବଡ଼ବଡ଼ ସମସ୍ତ ଆକର୍ଷଣର କେନ୍ଦ୍ର, ମନୁଷ୍ୟର ଦୃଷ୍ଟି ଯେପରି ଊର୍ଦ୍ଧ୍ୱକୁ ଚାହିଁ ଚାହିଁ ଊର୍ଦ୍ଧ୍ୱମୁଖୀ ହୋଇଗଲାଣି ! ପ୍ରଜା ଜମିଦାରର ଅନୁସରଣ କରୁଅଛି—ଜମିଦାର ରାଜାର ଅନୁସରଣ କରୁଅଛି । କିନ୍ତୁ ଲୋକ-ଲୋଚନ-ଅଗୋଚରରେ ଯେ କେତେ ଶତ ପ୍ରାଣୀ ଦୁର୍ବିସହ ଯାତନା ଉପଭୋଗ କରୁଛନ୍ତି, ତାହାଁର ଖବର ରଖୁଛି କିଏ ?

ନୀଳମାଧବ ମନ୍ଦିର ଅଧୁନା ଜୀର୍ଣ୍ଣ-କଳେବର । ତାହାର ସେ ପୁରାତନ ଗୌରବ ଆଉ ନାହିଁ । ମନ୍ଦିରବାଟେ କେତେ ଶତ ଲୋକ ପ୍ରତିଦିନ ଯାତାୟାତ କରୁଛନ୍ତି; କିନ୍ତୁ କେହି ଦିନେ ମନ୍ଦିର ଆଡ଼କୁ ମୁହଁ ଫେରାଇ ଦେଖୁ ନାହାନ୍ତି । ମନ୍ଦିରଟି ପୁରାତନର ଗୋଟିଏ ଅଂଶ; ସେ ବର୍ତ୍ତମାନର କେହି ନୁହେଁ । କିନ୍ତୁ ଏହାର ଅବସ୍ଥା ଚିରକାଳ ଏପରି ନଥିଲା । ଆମ୍ଭେମାନେ ଯେଉଁ ସମୟର କଥା କହୁଅଛୁଁ, ସେ ସମୟରେ ମନ୍ଦିରର ପୁରାଣ ମହିମା ଜଗତକୁ ମୁଗ୍ଧ, ବିସ୍ମିତ କରୁଥିଲା ।

ବିମଳା ପ୍ରତିଦିନ ସନ୍ଧ୍ୟାସମୟରେ ମନ୍ଦିରକୁ ଆସେ ଓ ନିଜ ମନକୁ ଗୀତ ଗାଇ ପୁଣି ଚାଲିଯାଏ । ସେଠାରେ ସେ ପ୍ରକୃତିର ଚାରୁ ଛବି ଦେଖି, ପ୍ରକୃତିର ସୁମଧୁର ସଙ୍ଗୀତ ଶୁଣି ସଙ୍ଗୀତମୟ ପ୍ରାଣରେ ନିଜେ ଗୀତ ଗାଏ । ସେ ସଙ୍ଗୀତର ତୁଳନା ଜଗତରେ ବିରଳ । ତାହା ମନ୍ଦାକିନୀର ସ୍ୱଚ୍ଛ ସ୍ରୋତ ସଦୃଶ ଆକାଶ-ବକ୍ଷରେ ମୃଦୁମନ୍ଦ-ଭାବରେ ନୃତ୍ୟକରେ ।

ଆଜ ଜ୍ୟେଷ୍ଠ ପୂର୍ଣ୍ଣିମା । ପୂର୍ଣ୍ଣଚନ୍ଦ୍ର ପ୍ରାଚୀ-ଲଲାଟରେ ଚନ୍ଦନ-ବିନ୍ଦୁରୂପେ ବିରାଜିତ ହୋଇ ସୁଧାମୟ ଜ୍ୟୋତ୍ସ୍ନାରେ ଜଗତକୁ ସିକ୍ତ କରୁଛନ୍ତି ।

ଆକାଶର ସ୍ଥାନେ ସ୍ଥାନେ କ୍ଷୁଦ୍ର କ୍ଷୁଦ୍ର ମେଘ ଖଣ୍ଡ । ନଭଃ-ପ୍ରାଙ୍ଗଣରେ ଚନ୍ଦ୍ର ଏହି ମେଘଗୁଡ଼ିକ ସଙ୍ଗେ ଲୁଚକାଳିଖେଳ ଖେଳୁଅଛି । ଏପରି ଆନନ୍ଦ ଓ ନିରାନନ୍ଦର ସନ୍ଧି-ସମୟରେ ଏ ନିର୍ଜନ ସ୍ଥଳରେ ବିମଳା ନୀଳ-ମାଧବ ମନ୍ଦିରରୁ ବହିର୍ଗତ ହୋଇ ସୋପାନାବଳୀ ଉପରେ ଯାଇ ବସିଲା । ବିମଳାର ବୟସ ପ୍ରାୟ ଚତୁର୍ଦ୍ଦଶ ବର୍ଷ ହେବ । ପରିଧେୟ ଗୋଟିଏ ନୀଳରଙ୍ଗର ଶାଢ଼ୀ; ନାସିକାରେ ଦଣ୍ଡି, ଏବଂ ହସ୍ତରେ ସ୍ୱର୍ଣ୍ଣ-ବଳୟ । ତାହାର କାନ୍ତି ଚମ୍ପକପୁଷ୍ପସଦୃଶ, ବେଣୀ ଅସଂଯତ । ନୈଶ ସମୀରଣ ବିମଳାର କପୋଳ-ନ୍ୟସ୍ତ ଅଳକସଙ୍ଗେ ନୃତ୍ୟ କରି ତାହାର ମୁଖକୁ ମେଘଦ୍ୱାରା ଅର୍ଦ୍ଧ-ଲୁକ୍କାୟିତ ଚନ୍ଦ୍ରମାର କାନ୍ତିରେ ବିଭୂଷିତ କରୁଅଛି । ବିମଳାର ମନ ଆଜି ଚିନ୍ତାମଗ୍ନ; ମୁଖ ଗମ୍ଭୀର । ସେ ଯେପରି କାହାକୁ ଖୋଜୁଛି କିନ୍ତୁ ପାଉନାହିଁ । ସେ ହସ୍ତୋପରି ଗଣ୍ଡଦେଶ ନ୍ୟସ୍ତ କରି ଆକାଶର ଚନ୍ଦ୍ରଆଡ଼କୁ ଅନାଇଲା । ଚନ୍ଦ୍ରର ଲୁଚକାଳିଖେଳ ଦେଖି ମନମଧ୍ୟରେ କଣ ଭାବି ଗୀତ ଗାଇବାକୁ ଲାଗିଲା—

କିର କିପାଁ ପ୍ରବଞ୍ଚନା ?

ଅହେ ଶଶଧର ସୁଧାର ଆକର ଶୁଣ ବାରେ ମୋ ପ୍ରାର୍ଥନା ॥ ୦ ।

ସରୋବର-ବକ୍ଷେ ନୀର-ଆସନେ
ଖେଳେ କୁମୁଦିନୀ ମନ୍ଦ ପବନେ;

ଲୁଚକାଳିଖେଳେ ମାତି ଅବହେଳେ ଦେଉଛ କିପାଁ ଯାତନା । ୧

ତବ ଆଲିଙ୍ଗନ ସୁଧା-ନିର୍ଝର,
ଅଟେ କୁମୁଦିନୀ-ହୃଦ-ସମ୍ବଳ;

କାଦମ୍ବିନୀ-କୋଳେ ଲୁଚି ଅନ୍ତରାଳେ ନ ଲୁଚାଅ ସେ ଜୋଛନା । ୨

କରୁଛି ମିନତି, କୁମୁଦ-ବନ୍ଧୁ,
ଦେଖାଅ ନିର୍ମଳେ ବଦନ ମଧୁ;

ସୁଧା-ପାରାବାରେ ଭାସି ପ୍ରେମଭରେ ଲଭିବ ଧନୀ ସାନ୍ତ୍ୱନା । ୩

ସ୍ୱର-ଲହରୀ ବନ୍ଦ ହେଲା; କିନ୍ତୁ ବିମଳାର ପ୍ରାଣ ଅଧୁନା ସଙ୍ଗୀତମୟ । ସଙ୍ଗୀତ ବନ୍ଦ ହେଲେ ସୁଦ୍ଧା ଜଗତ ତାକୁ ସଙ୍ଗୀତମୟ ଦିଶିବାକୁ ଲାଗିଲା । ରଜନୀର ନିସ୍ତବ୍ଧତା କେଉଁଆଡେ ଉଭେଇଗଲା । ଜଗତର ଅଜ୍ଞାତରେ, ନିସ୍ତବ୍ଧତାର ଅଜ୍ଞାତରେ ଧରଣୀ-ବକ୍ଷରେ ସୁମଧୁର ସଙ୍ଗୀତ-ରାଜ୍ୟ ପ୍ରତିଷ୍ଠିତ ହେଲା ।

ବିମଳା ଆବେଗରେ, ଉତ୍ସାହରେ ଆତ୍ମ-ବିସ୍ମୃତ ହୋଇ ନିବିଷ୍ଟଚିତ୍ତରେ ମହାନଦୀ-ବକ୍ଷରେ ଜ୍ୟୋତ୍ସ୍ନାର ସୁମଧୁର ଲାସ୍ୟ ଦେଖିବାକୁ ଲାଗିଲା । କିନ୍ତୁ ଏ କିଏ? ତା ମନ ଏପରି ଚଞ୍ଚଳ କାହିଁକି? ଏ କାହାର ପଦଶବ୍ଦ? ଏ କାହାର ଉଷ୍ଣ ନିଃଶ୍ୱାସ? ବିମଳା ପଛକୁ ଫେରି ଅନାଇଲା — କି ସୁନ୍ଦର ଯୁବାମୂର୍ତ୍ତି, ଯେପରି ନୀଳବ୍ୟୋମ-ପଟରେ ଚିତ୍ରିତ ତରୁଣ ଅରୁଣମୂର୍ତ୍ତି! ସେ ମୂର୍ତ୍ତି ଦେଖି ବିମଳା ମୁଗ୍ଧ ହୋଇଗଲା । ତାହାର ନୟନ-ସମକ୍ଷରେ ଯେପରି ସୌନ୍ଦର୍ଯ୍ୟ-ଭଣ୍ଡାରର ସର୍ବଶ୍ରେଷ୍ଠ ମଣି ପ୍ରତିଭାତ ହେଲା । ସେ ଯୁବକଙ୍କ ନିକଟକୁ ଯାଇ କମ୍ପିତ-କଣ୍ଠରେ କହିଲା, "ଆଜଯାଏ ତୁମର ଶାରୀରିକ ଦୁର୍ବଳତା ଯାଇନାହିଁ । ତାପରେ ପୁଣି ଏତେ ପରିଶ୍ରମ! ମୋ ରାଣ, ଦେହରେ ବଳ ହେବାଯାଏ ଆଉ ରାତିରେ ଏପରି ବୁଲ ନାହିଁ ।"

ବିମଳାର କଥା ଶୁଣି ଯୁବକଙ୍କ ସମଗ୍ର ଶରୀର କଣ୍ଟକିତ ହୋଇଗଲା ବିମଳାର ଅଜ୍ଞାତରେ ତାଙ୍କ ନୟନ-କୋଣରେ ସ୍ୱଚ୍ଛ ଅଶ୍ରୁ-କଣା ବିଲୀନ ହୋଇଗଲା । ସେ ତାହାର ହସ୍ତ ଧରି କହିଲେ "କାହିଁକି ବିମଳା! ମୋ ଦେହ ତ ବେଶ୍ ସବଳ ହେଲାଣି । ଆଜି ସଞ୍ଜବେଳେ ମହାନଦୀ ଆର ପାରିରେ ଗୋଟିଏ ନିଆଁ-ହୁଳା ଦେଖାଯାଉଥିଲା । ସେଠାକୁ ଯାଇଁ ଦେଖେ ଯେ ମରହଟ୍ଟାମାନେ ଦଳ ବଳ ବାନ୍ଧି ଆସିଛନ୍ତି । ସେ ଦିନ ନାନା ସାହେବ ଭୋଁସ୍ଲା ଯେ ଅପମାନ ପାଇଥିଲେ, ତହିଁର ପ୍ରତିଶୋଧ ନେବାପାଇଁ ଏ ଆୟୋଜନ । ମୁଁ ଏକ୍ଷଣି ଦୁର୍ଗକୁ ଯାଇ ମହାରାଜାଙ୍କୁ ଏ ସମ୍ବାଦ ଦେବି ।"

ଯୁବକ ନୀରବ ହେଲେ । ଯୁବତୀଠାରୁ ଉତ୍ତର ପ୍ରତ୍ୟାଶା କରି ତା' ମୁଖକୁ ଅନାଇବାକୁ ଲାଗିଲେ । ଅଶ୍ରୁ-ସିକ୍ତ-ଲୋଚନା ବିମଳା ରୁଦ୍ଧକଣ୍ଠରେ କହିଲା, "କିନ୍ତୁ ତୁମ ଦେହ ଯେ ଭଲ ହୋଇନାହିଁ ।"

ଯୁବକ କହିଲେ, "ଦେହପାଇଁ ଏତେ ଚିନ୍ତା କାହିଁକି ? ଯଦି ଦରକାର ହୁଏ, ଯୁଦ୍ଧକ୍ଷେତ୍ରକୁ ଯିବାକୁ ହେବ ।"

ବିମଳାର ଜ୍ୟୋତ୍ସ୍ନା-ପ୍ରତିଫଳିତ ଅଶ୍ରୁସିକ୍ତ ଗଣ୍ଡୋପରି ଯୁବକଙ୍କ ଦୃଷ୍ଟି ପଡ଼ିଲା । ତାଙ୍କ ହସ୍ତ ଶିଥିଳ ହୋଇଗଲା । ସେ ଆଉ ବିମଳାର ହସ୍ତ ଧରି ପାରିଲେ ନାହିଁ । ବିମଳା ନୀରବରେ କ୍ରନ୍ଦନ କରିବାକୁ ଲାଗିଲା । ଏସମୟରେ ଯଦି ଆକାଶର ତାରକା-ଖଚିତ ଗୃହରୁ ଚନ୍ଦ୍ରାତପ ଭାଙ୍ଗି-ଯାଇ ଯୁବକଙ୍କ ମସ୍ତକ ଉପରେ ପଡ଼ିଥାନ୍ତା, ତାହାହେଲେ ସେ ତିଳେମାତ୍ର ଦୁଃଖିତ ହୋଇ ନଥାନ୍ତେ । କିନ୍ତୁ ବିମଳାର ହୃଦୟର ଆବେଗ ଦେଖି ସେ ଆଉ ସମ୍ଭାଳି ପାରିଲେ ନାହିଁ । ତାଙ୍କ ଚକ୍ଷୁ ମଧ୍ୟ ଲୋତକପୂର୍ଣ୍ଣ ହୋଇଗଲା । ପରେ ବହୁ କଷ୍ଟରେ ଆତ୍ମ-ସଂଗୋପନ କରି କହିଲେ, "ଛି, ବିମଳା । ଦେଶର ଶତ୍ରୁକୁ ଦାଣ୍ଡଦୁଆରେ ଦେଖି ଏପରି କଥା କହୁଛ ।"

ବିମଳା ମସ୍ତକ ଉତ୍ତୋଳନ କରି ସ୍ଥିର ଦୃଷ୍ଟିରେ ଯୁବକଙ୍କ ମୁଖକୁ ଅନାଇଲା । ତାହାର ମୁଖର ରଙ୍ଗ ଅଧୁନା ପରିବର୍ତ୍ତିତ—ନୟନ ଅଶ୍ରୁବିମୁକ୍ତ । ସେ ଯୁବକଙ୍କ ହସ୍ତକୁ ବାରମ୍ବାର ଚୁମ୍ବନ କରି କହିଲା, "ଦେଶର କାର୍ଯ୍ୟ—ଦେବତାଙ୍କ କାର୍ଯ୍ୟ—ମୁଁ ବାଧା ଦେବନାହିଁ । ଯାଅ । କିନ୍ତୁ—"

ବିମଳାର କଣ୍ଠରୁଦ୍ଧ ହୋଇଗଲା । ତା' ମୁଖରୁ ଆଉ କଥା ବାହାରି ପାରିଲା ନାହିଁ । ଯୁବକ ସହାସ୍ୟ ବଦନରେ କହିଲେ, "ଯଦି ଈଶ୍ୱରଙ୍କ ଇଚ୍ଛାହୁଏ, ନିଶ୍ଚୟ ଦେଖା ହେବ ।" ଏହା କହି ସେ ବିମଳାଠାରୁ ବିଦାୟ ନେଇ ବୃକ୍ଷାନ୍ତରାଳରେ ଅଦୃଶ୍ୟ ହୋଇଥିଲେ ।

# ଦ୍ୱିତୀୟ ପରିଚ୍ଛେଦ

## ବିଶ୍ୱାସଘାତକ

" I give him curses, yet he gives me love "
—Shakespeare.

"ଏତେ ରାତିରେ ନିର୍ଜନରେ ପରପୁରୁଷ ସଙ୍ଗେ ! ଛି, ବିମଳା !"

ବିମଳା ପଛକୁ ଅନାଇ ଦେଖିଲା, ଆଉ ଜଣେ ଯୁବକ ଛିଡ଼ା ହୋଇ ତାକୁ ଏପରି କହୁଛନ୍ତି । ଯୁବକଙ୍କୁ ଚିହ୍ନିବା ପାଇଁ ବିମଳାର ବେଶି ବିଳମ୍ବ ହେଲାନାହିଁ । ସେ ଶୈଶବରୁ ପିତୃମାତୃହୀନା । ସମ୍ବଲପୁର ରାଜ୍ୟର ସ୍ୱାଧୀନ ନରପତି ଜୟନ୍ତସିଂହଙ୍କ ସେନାପତି ବୀରେଶ୍ୱର ସିଂହଙ୍କ ଲାଳନପାଳନରେ ବର୍ଦ୍ଧିତା ହୋଇ ସେ ଭକ୍ତିଭାଜନ ପିତା ଓ ସ୍ନେହମୟୀ ମାତାଙ୍କୁ ସୁଦ୍ଧା ଭୁଲି-ଥିଲା । ବୀରେଶ୍ୱର ତାହାର ପିତା ଓ ମାତା ଦୁହିଁଙ୍କ ସ୍ଥାନ ଅଧିକାର କରିଥିଲେ । ସେ ତାକୁ ନିଜ ଝିଅଠୁ ବଳି ସ୍ନେହ କରୁଥିଲେ । ବିମଳା ମଧ୍ୟ ବୀରେଶ୍ୱରଙ୍କ ପରିବାରକୁ ନିଜ ପରିବାର ବୋଲି ଭାବିଥିଲା । ବୀରେଶ୍ୱରଙ୍କ ଏକମାତ୍ର ପୁତ୍ର ଉଦିତପ୍ରତାପ ସିଂହଙ୍କୁ ସେ ନିଜ ଅଗ୍ରଜପ୍ରାୟେ ଭକ୍ତି କରୁଥିଲା । ଉଦିତପ୍ରତାପଙ୍କ କଥା ଶୁଣି ତାଙ୍କ ନିକଟକୁ ଯାଇ କହିଲା, " ଦାଦା, ବାପା ତ କହୁଛନ୍ତି, ରାତିରେ କେବେ କିପରି ଏଠାକୁ ଆସୁଥିବୁ ବୋଲି । ମୋ' ମନରେ କଷ୍ଟ ହେଲେ, ମୁଁ ଏଠିକି ଆସି ଗୀତ ଗାଏ— ଗୀତ ଗାଇ ତାପିତ ପ୍ରାଣକୁ ଶୀତଳ କରେ । ତୋ' ଦୁଃଖିନୀ ଭଉଣୀ ଉପରେ କାହିଁକି ରାଗୁଛୁ ?"

"କିନ୍ତୁ ପରପୁରୁଷ ସଙ୍ଗେ !" ଏହା କହି ଉଦିତପ୍ରତାପ ଜଳ କାମୁଡ଼ ବିମଳାର ମୁଖ ଆଡ଼କୁ ଅନାଇଲେ । ଲଜ୍ଜାରେ ବିମଳାର ମୁଖ ତଳକୁ ହୋଇଗଲା । ଉଦିତପ୍ରତାପ ପୁନର୍ବାର କହିଲେ, "ବିମଳା, ତୋ' ପିଲାଟିଆ

ସ୍ୱଭାବ କେବେ ଛାଡ଼ିଲୁ ନାହିଁ । ତୁ ବଡ଼ ହେଲୁଣି, ସଂସାରର ଗତିଗତ ସବୁ ଦେଖୁଛୁ । ତୋର ଏ ବୟସରେ ଅନ୍ୟ ଲୋକ ସଙ୍ଗେ ନିର୍ଜନରେ କଥାବାର୍ତ୍ତା କରିବା ଠିକ୍ ନୁହେ ।"

"କିନ୍ତୁ ପ୍ରସନ୍ନକୁମାର ଯେ ମୋ ପିଲାକାଳ ସଙ୍ଗୀ । ତାଙ୍କ ସଙ୍ଗେ ଏକାନ୍ତରେ କଥାବାର୍ତ୍ତା କଲେ ଦୋଷ କଣ ?"

"ସେ ତୋର ପିଲାକାଳ ସାଥି ହୋଇପାରନ୍ତି । ପିଲାବେଳେ ସେ ସବୁ ଶୋଭା ପାଉଥିଲା । ଆଜି ତୋର ଏ ଆଚରଣ ଶୁଣିଲେ ବାପା କଅଣ କହିବେ ?"

"ଛି, ଦାଦା ! ତୁ କ୍ଷତ୍ରିୟ-ଯୁବକ ହୋଇ ଏପରି କହୁଛୁ !"

"ନା, କମଳା ! ତୁ ଏପରି କଲେ ମୋ' ମନରେ କଷ୍ଟ ହେବ । ପ୍ରସନ୍ନକୁମାରଙ୍କ ଚରିତ୍ର ଭଲ ନୁହେ । ଅସଚ୍ଚରିତ୍ର ଲୋକଙ୍କ ସଙ୍ଗେ ତତେ ଦେଖିଲେ ମୁଁ ରାଗିବ ।"

ପ୍ରସନ୍ନକୁମାର କମଳାର ଅନ୍ତରଙ୍ଗ ପ୍ରତିବେଶୀ । ପିଲାଦିନରୁ ଦୁହେଁଯାକ ଏକାସଙ୍ଗରେ ଖେଳୁଥିଲେ—ଦୁହେଁ ଦୁହିଙ୍କ ଦୁଃଖରେ ଦୁଃଖୀ ଓ ସୁଖରେ ସୁଖୀ ହେଉଥିଲେ । ଦୁହେଁଯାକ ଗୋଟିଏ ବୃନ୍ତର ଯୁଗଳ ପୁଷ୍ପ ପରି ଶୋଭା ପାଉଥିଲେ । ଦୁହିଙ୍କ ପ୍ରାଣ ଏକ, ମନ ଏକ । ପ୍ରସନ୍ନକୁମାରଙ୍କ ନିନ୍ଦା ଶୁଣି କମଳା-ମନରେ କଷ୍ଟ ହେଲା । ସେ ଉଦିତପ୍ରତାପଙ୍କ ଉଦ୍ଦେଶ୍ୟ ବୁଝି-ପାରିଲା । ଉଦିତପ୍ରତାପ କମଳାର ସୌନ୍ଦର୍ଯ୍ୟରେ ମୁଗ୍ଧ - ତାର ପ୍ରଣୟପ୍ରାର୍ଥୀ । କମଳା ତାଙ୍କୁ ଅନେକ ଥର ବୁଝାଇ କହିଥିଲା—ତାଙ୍କୁ ଭଗିନୀର ସ୍ନେହ, ଦୟା, ଭକ୍ତି ସର୍ବସ୍ୱ ଅର୍ପଣ କରିଥିଲା । କିନ୍ତୁ ଉଦିତପ୍ରତାପ ତହିଁରେ ସନ୍ତୁଷ୍ଟ ନ ହୋଇ ତା' ହୃଦୟ-ରାଜ୍ୟର ରାଜା ହେବାକୁ ଇଚ୍ଛା କରିଥିଲେ । ତାଙ୍କ ଅଭିଳାଷ-ସିଦ୍ଧି-ପଥରେ ପ୍ରସନ୍ନକୁମାରଙ୍କୁ ପ୍ରଧାନ ଅନ୍ତରାୟ ଭାବି ସେ ତାଙ୍କ ବିରୁଦ୍ଧରେ ନାନା ମିଥ୍ୟାପବାଦ ରଚନା କରି କମଳା ସଙ୍ଗେ ତାଙ୍କ ଦେଖା-ସାକ୍ଷାତ ବନ୍ଦ କରିଥିଲେ । ଦଗ୍ଧ-ହୃଦୟା କମଳା ମାଳମାଧବଙ୍କ

ମନ୍ଦିରକୁ ପ୍ରତିଦିନ ଗୀତ ଗାଇବା ଛଳରେ ଆସି ପ୍ରସନ୍ନକୁମାରଙ୍କ ସଙ୍ଗେ ଦେଖା କରି ଯାଏ । ଏ କଥା ମଧ୍ଯ ଉଦିତପ୍ରତାପଙ୍କୁ ଅସହ୍ୟ ହୋଇ-ପଡ଼ିଲା । ସେମାନଙ୍କର ସେ ମଧୁର ଆଳାପ, ପରସ୍ପର ହୃଦୟ-ଦ୍ୱାର-ଉଦ୍‌ଘାଟନ ବନ୍ଦ କରିବା ସକାଶେ ସେ ଚେଷ୍ଟା କରିବାକୁ ଲାଗିଲେ । ଆଜି ତାଙ୍କ ମୁଖରୁ ଏ ଅସଙ୍ଗତ, ଅସଂଯତ କଥା ଶୁଣି ବିମଳା କହିଲା, "ଦାଦା, ମୁଁ ନାନା ଦୋଷରେ ଦୋଷୀ ହୋଇପାରେଁ; କିନ୍ତୁ ପ୍ରସନ୍ନକୁମାର ନିର୍ଦ୍ଦୋଷ—ମୁଁ ତାଙ୍କୁ ଭଲ କରି ଜାଣେଁ । ଯଦି ମତେ ଭଉଣୀ ବୋଲି ସ୍ନେହ କରୁ, ଏପରି କଥା କେବେ କହିବୁ ନାହିଁ ।"

"ମୁଁ ପୁଣି କହୁଛି—ପ୍ରସନ୍ନକୁମାର ଅସଚ୍ଚରିତ୍ର । ବାପା ମଧ୍ୟ ଏ କଥା ଜାଣନ୍ତି । ବାପାଙ୍କ ଆଦେଶମତେ ମୁଁ ଏଠାକୁ ଆସିଛି । ଆଉ ଏଣିକି ତୁ ଘରୁ ବାହାରି ପାରିବୁ ନାହିଁ ।"

ଉଦିତପ୍ରତାପଙ୍କ କଥା ଶୁଣି ବିମଳା ଦଳିତା-ଫଣିନୀ ସଦୃଶ କ୍ରୋଧରେ ଜର୍ଜ୍ଜରିତ ହୋଇଗଲା । ସେ ତାଙ୍କ କୂଟ ବୁଝି ପାରିଲା । ଅବଳା ନାରୀ ତଳକୁ ମୁହଁ କରି କାନ୍ଦିବାକୁ ଲାଗିଲା । ବିମଳାର ଏ ଅବସ୍ଥା ଦେଖି ଉଦିତପ୍ରତାପଙ୍କ ନୟନ-କୋଣରେ ଈଷତ୍ ଆନନ୍ଦ-ରେଖା ଫୁଟି ଉଠିଲା । ତାଙ୍କ ଓଷ୍ଠ-ପ୍ରାନ୍ତରେ କୁଟିଳ ହାସ୍ୟର ଜ୍ୟୋତି ପ୍ରକଟିତ ହୋଇ ପରମୁହୂର୍ତ୍ତରେ ବିଲୀନ ହୋଇଗଲା । ବିମଳାକୁ ଚତୁର୍ଦ୍ଦିଗ ଘୋର ତମସାଚ୍ଛନ୍ନ ପ୍ରତୀତ ହେଲା । ସେ କମ୍ପିତ-କଣ୍ଠରେ କହିଲା, "ଦାଦା, ତୋର ଏ କୂଟ ସବୁ ବୃଥା । ମୁଁ ତୋତେ ଭଗିନୀର ସର୍ବସ୍ୱ ଅର୍ପଣ କରି ସାରିଛି । ଏଥିରୁ ବେଶି ତୁ ଆଉ କିଛି ପାଇ ପାରିବୁ ନାହିଁ । ତୁ ମତେ ବାନ୍ଧିପାରୁ; କିନ୍ତୁ ମୋ ହୃଦୟକୁ ବାନ୍ଧି ପାରିବୁ ନାହିଁ । ଉପରେ ଈଶ୍ୱର ଅଛନ୍ତି ।"

ଏହା କହି ସେ ଦ୍ରୁତ-ପଦ-ବିକ୍ଷେପରେ ସେଠାରୁ ଚାଲିଗଲା । ବିମଳାର ଭାବ ଦେଖି ଉଦିତପ୍ରତାପ ପ୍ରମାଦ ଗଣିଲେ । ପାଳିତା କନ୍ୟାର ପୁଣି କେତେଦୂର ଅସ୍ପର୍ଦ୍ଧା ! ଝାରିଖଣ୍ଡ ଛତ୍ରପତି ମହାରାଜାଙ୍କ ସେନାପତି-ପୁତ୍ରକୁ

ଖାତର କରେନାହିଁ ! କ୍ରୋଧରେ ତାଙ୍କ ମୁଖ ଲାଲ ହୋଇଗଲା । ଦଶନରେ ଅଧର ଚାପି ବିମଳାର ଏ ଆଚରଣର ପ୍ରତିଶୋଧ ନେବା ନିମନ୍ତେ ସେ ବିମଳାର ଅନୁସରଣ କଲେ ।

## ତୃତୀୟ ପରିଚ୍ଛେଦ

### କ୍ଷୁଦ୍ର ମେଘ ।

"ଶିବରେ ପ୍ରଶଂସା କରି ବନ୍ଧୁବନ
ଶତ୍ରୁଯୋଧେ ହୋଇଛନ୍ତି ଧୈର୍ଯ୍ୟହୀନ ,
ସ୍ୱଦେଶେ ବାହୁଡ଼ି ଯିବାକୁ ବାସନା-
ବଶୁଁ କରୁଛନ୍ତି ବିଜନେ ମନ୍ତ୍ରଣା ।"

ନନ୍ଦିକେଶ୍ୱରୀ ।

ଏ କେତେଦିନ ହେଲା ବିମଳାର ମନରେ ଜମା ସୁଖ ନାହିଁ । ଉଦିତପ୍ରତାପଙ୍କ କଟୂକ୍ତି —"ତୁ ଆଉ ଏଣିକି ଘରୁ ବାହାର ପାରିବୁ ନାହିଁ ।"-- ସର୍ବଦା ତାହାର କର୍ଣ୍ଣ-କୁହରରେ ପ୍ରତିଧ୍ୱନିତ ହେଉଅଛି । କି—ସରଳା ବାଳିକାର ସ୍ୱାଧୀନ ମତ ଉପରେ ଏ ଅତ୍ୟାଚାର ! ବିମଳା ଉଦିତପ୍ରତାପଙ୍କୁ ସ୍ପଷ୍ଟରୂପେ କହିଅଛି ଯେ ସେ ତାଙ୍କ ପ୍ରଣୟାକାଙ୍କ୍ଷିଣୀ ନୁହେଁ । ତଥାପି ତାକୁ ଶୃଙ୍ଖଳିତ କରିବା ପାଇଁ ଏ ପ୍ରୟାସ କାହିଁକି ?

ପୂର୍ବେ ବିମଳା ନିଜହସ୍ତରେ ଗୃହକର୍ମ ସବୁ କରୁଥାଏ । କିନ୍ତୁ ଆଜି ଏଣିକି ସେ ଆଉ ତାକୁ ଜମା ମନ ଗଲା ନାହିଁ । ତାହାର ମାନସ-ଚକ୍ଷୁ-ସମକ୍ଷରେ ପ୍ରସନ୍ନକୁମାରଙ୍କ ପ୍ରେମମୟୀ ପ୍ରତିମା ଅହରହ ନୃତ୍ୟ କରିବାକୁ ଲାଗିଲା । ସେ ତାଙ୍କୁ ଛାଡ଼ି କାହାରି ଆଉ ଅନ୍ୟ ବିଷୟ ଭାବି ପାରିବ ? ତାର ବିମଳା ପ୍ରେମର ପ୍ରବଳ ବନ୍ୟାରେ ଶତ ଉଦିତପ୍ରତାପ ବାଲିବନ୍ଧପ୍ରାୟେ ଭାସିଯିବେ ।

ପ୍ରଥମେ ପ୍ରଥମେ ବିମଳା ମନଦୁଃଖରେ ଘର କଣେ ବସି ଭାବନା କରୁଥାଏ । ଭାବ ଭାବ ଲୋତକରେ ଗଣ୍ଡଦେଶ ସିକ୍ତ କରେ । ଭୋଜନରେ କିମ୍ବା ଶୟନରେ ତାର ଆଉ ଆସ୍ଥା ନାହିଁ । ଶରୀର ଦିନକୁଦିନ କୃଶ ହୋଇ ଗଲାଣି । ତାହାର ଶାରୀରିକ ଓ ମାନସିକ ପରିବର୍ତ୍ତନ ଦେଖି ପରିବାରସ୍ଥ ସମସ୍ତେ ଚିନ୍ତାକୂଳ ହୋଇ ପଡିଲେ । ତାକୁ ସାନ୍ତ୍ୱନା ଦେବା ନିମନ୍ତେ ଅନେକ ଯତ୍ନ କଲେ; କିନ୍ତୁ ସେମାନଙ୍କ ସକଳ ଚେଷ୍ଟା ବ୍ୟର୍ଥ ହେଲା । ଗୃହ ବର୍ତ୍ତମାନ ତାହା ପକ୍ଷରେ କାରାଗାର । ଏ କାରାଗାରରୁ ମୁକ୍ତି ପାଇଲେହିଁ ରକ୍ଷା ।

କିଛିଦିନ ଗଲା ପରେ ଅକସ୍ମାତ୍ ସ୍ପଷ୍ଟ ହେଲା ଯେ ବିମଳା ନିରୁଦ୍ଦିଷ୍ଟା ହୋଇଛି । ସେ କେଉଁଠିକି ଗଲା, କେହି ଜାଣନ୍ତି ନାହିଁ । ତାକୁ ଖୋଜିବାପାଇଁ ବୀରେଶ୍ୱର ଚାରିଆଡକୁ ଲୋକ ପଠାଇଲେ; କିନ୍ତୁ ବିମଳାର ସନ୍ଧାନ ମିଳିଲା ନାହିଁ । ରାଜ୍ୟ ଯାକ ଚାରିଆଡେ ଚହଲ ପଡିଗଲା । ସମସ୍ତଙ୍କ ମୁଖରେ ବିଷାଦର କାଳିମା । ବୀରେଶ୍ୱରଙ୍କୁ ଆଉ କିଛି ଭଲ ଲାଗୁନାହିଁ । ସଂସାର ତାଙ୍କୁ ବିଷମୟ ପ୍ରତୀତ ହୋଇଅଛି । ବିମଳା ବିଷୟରେ ଅନେକ ଲୋକ ଅନେକ କଥା କହୁଛନ୍ତି । କିଏ କହେ ବିମଳା ପାଣିରେ ବୁଡି ମରିଛି । ତାହାର ମତ ସମର୍ଥନ କରିବା ସକାଶେ ଅପର କେହି କହେ ଯେ, ସେ ବିମଳାର ମୃତ ଦେହ ଦେଖି ଆସିଛି । ଏପରି ନାନା ମୁଖରେ ନାନା କଥା ଶୁଣାଗଲା ।

ଏ ସମ୍ବାଦ ଯାଇ ଉଦିତପ୍ରତାପଙ୍କ କାନରେ ପଡିଲା । ସେ ଅଧୁନା ସମ୍ବଲପୁର ଦୁର୍ଗରେ ଥାଇ ମରହଟ୍ଟାମାନଙ୍କ ସଙ୍ଗେ ଭୀଷଣ ସଂଗ୍ରାମରେ ପ୍ରବୃତ୍ତ ହୋଇଛନ୍ତି । କ୍ରମାନ୍ୱୟ ଛମାସ କାଳ ମରହଟ୍ଟାମାନେ ଦୁର୍ଗ ଅଧିକାର କରିବାକୁ ଚେଷ୍ଟା କଲେ; କିନ୍ତୁ ଓଡିଆମାନଙ୍କ ବୀରତ୍ୱ ସମ୍ମୁଖରେ ନ ପାରି ପ୍ରତିଥର ପଛଘୁଞ୍ଚା ଦେବାକୁ ବାଧ୍ୟ ହେଲେ । * ଦୁର୍ଗ ମଧ୍ୟରେ

* Vide Bengal District Gazetteer. (Sambalpur)

ଆଦୌ ପ୍ରବେଶ କରି ପାରିଲେ ନାହିଁ । ଏ ଅଟେ ଉଦିତପ୍ରତାପଙ୍କର ଆଉ ପୂର୍ବପରି ଉତ୍ସାହ ନାହିଁ । ଯୁଦ୍ଧ କରିବାକୁ ଆଉ ତାଙ୍କୁ ଭଲ ଲାଗୁ- ନାହିଁ । ତାଙ୍କର ଏପରି ଭାବ ଦେଖି ପ୍ରସନ୍ନକୁମାର ବ୍ୟଥିତ ହେଲେ । ଈର୍ଷାପରବଶ ହୋଇ ଉଦିତପ୍ରତାପ ସମରାଙ୍ଗଣରେ ପ୍ରସନ୍ନକୁମାରଙ୍କ କ୍ଷତି କରିବାକୁ ଚେଷ୍ଟା କରିଥିଲେ; କିନ୍ତୁ ଭଗବାନ ଏ ବିପଦରୁ ତାଙ୍କୁ ରକ୍ଷା କଲେ । ପ୍ରସନ୍ନକୁମାର ଏପରି ଦକ୍ଷତା ସହକାରେ ଯୁଦ୍ଧ କରିବାକୁ ଲାଗିଲେ ଯେ ଜୟନ୍ତସିଂହ ତାଙ୍କ ରଣ-କୌଶଳରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ତାଙ୍କୁ ତୋରଣରକ୍ଷୀ ସୈନିକମାନଙ୍କ ଅଧିନାୟକ-ପଦରେ ନିଯୁକ୍ତ କଲେ । ଏ ଗୁରୁଦାୟିତ୍ୱ ମସ୍ତକରେ ବହନ କରି ସଂସାରର ସମସ୍ତ ଚିନ୍ତା ଭୁଲି ପ୍ରସନ୍ନକୁମାର କର୍ତ୍ତବ୍ୟ-ପଥରେ ଅଗ୍ରସର ହେଲେ ।

କିନ୍ତୁ ପ୍ରସନ୍ନକୁମାରଙ୍କ ଉନ୍ନତି ଉଦିତପ୍ରତାପଙ୍କୁ ଭଲ ଲାଗିଲା ନାହିଁ । ପ୍ରସନ୍ନକୁମାରଙ୍କୁ ଦେଖିଲେ, କେଜାଣି କାହିଁକି, ତାଙ୍କ ମୁଖ କ୍ରୋଧରେ ଲାଲ ହୋଇଯାଏ । ତାଙ୍କ ଚକ୍ଷୁରୁ ଅଗ୍ନି-ସ୍ଫୁଲିଙ୍ଗ ନିର୍ଗତ ହୁଏ । ଯେଉଁଦିନ ଉଦିତପ୍ରତାପ ବିମଳାର ନିରୁଦ୍ଦିଷ୍ଟା ହେବାର ସମ୍ବାଦ ଶୁଣିଲେ, ସେହିଦିନ ତାଙ୍କ ମୁଖ ଗମ୍ଭୀର ହୋଇଗଲା, ଯେପରି ସେ ସବୁବେଳେ କଣ ଚିନ୍ତା କରୁଛନ୍ତି ! ରଣ-କୋଳାହଳ ଆଉ ତାଙ୍କ ପ୍ରାଣକୁ ନଚାଇ ପାରିଲା ନାହିଁ । ସେ ନୀରବରେ ନିର୍ଜନରେ ବସି ଚିନ୍ତା କରିବାକୁ ଲାଗିଲେ ।

କିଛିଦିନ ପରେ ପୁଣି ଦୁର୍ଗଭିତରେ ହୁରି ପଡିଗଲା, ଉଦିତପ୍ରତାପ ଦୁର୍ଗରେ ନାହାନ୍ତି । ସରଳ-ହୃଦୟ ପ୍ରସନ୍ନକୁମାର ଏଥିର କାରଣ କିଛି ବୁଝି ପାରିଲେ ନାହିଁ । ଯୁଦ୍ଧସମୟରେ ସେନାପତି-ପୁତ୍ରଙ୍କ ଈଦୃଶ ଆଚରଣ ଦେଖି ସମସ୍ତେ ବ୍ୟଥିତ ହେଲେ । କିନ୍ତୁ ଜଗତର ଦୁଃଖ ହେଉ ବା ସୁଖ ହେଉ, ସଭିଏ ନିଜ ନିଜ କାର୍ଯ୍ୟ ନେଇ ବ୍ୟସ୍ତ । ମନୁଷ୍ୟ ଦେବତା ନୁହେ— ସମୟେ ସମୟେ ଦେବତା ହେବାକୁ ଚେଷ୍ଟା କରିଥାଏ ମାତ୍ର । ସଂସାରରେ ଏହି ଦେବତ୍ୱ ଭିଲାଷୀ ମନୁଷ୍ୟଙ୍କ ସଂଖ୍ୟା ନିତାନ୍ତ କମ୍—

ନାହିଁ ବୋଲି କହିଲେ ଚଳେ । ପ୍ରକାଶ୍ୟରେ ହେଉ ବା ଗୋପନରେ ହେଉ, ସଭିଏ ନିଜ ନିଜ ସ୍ୱାର୍ଥରେ ମାତିଛନ୍ତି । ଯେଉଁମାନେ ଏହି ନିୟମର ବହିର୍ଭୂତ ସେମାନେ ଜଗତର ନମସ୍କରଣୀୟ ।

* * * *

ଓଡ଼ିଆମାନଙ୍କ ହସ୍ତରେ ବାରମ୍ବାର ପରାସ୍ତ ହୋଇ ମରହଟ୍ଟାମାନେ ଅତିଶୟ କାତର ହୋଇ ପଡ଼ିଥିଲେ । ଓଡ଼ିଶାକୁ ଜୟ କରିବା ସେମାନେ ଯେପରି ସହଜ ବୋଲି ଭାବିଥିଲେ, କାର୍ଯ୍ୟରେ ତହିଁର ଠିକ୍ ବିପରୀତ ଦେଖିବାକୁ ପାଇଲେ । ସ୍ୱାଧୀନ ଜାତିକୁ ପରାଧୀନ କରିବା ସହଜ କଥା ନୁହେ ।

ସମ୍ବଲପୁରାଧିପତି ଅଭୟସିଂହଙ୍କ ହସ୍ତରେ ମରହଟ୍ଟାମାନେ ଯେ ପରାଜୟ ସ୍ୱୀକାର କରିଥିଲେ, ତହିଁର ଯନ୍ତ୍ରଣା ଆଜଯାଏ ଯାଇନାହିଁ । ତା'ପରେ ପୁଣି ଜୟନ୍ତସିଂହଙ୍କ ହସ୍ତରେ ଏ ଅପମାନ ! ନାନାସାହେବ ଭୌଁସ୍ଲା (୧) ଏପରି ଅବସ୍ଥାରେ କଣ କରିବେ, କିଛି ଠିକ୍ କରି ପାରିଲେ ନାହିଁ । ସମସ୍ତ ସାମନ୍ତମାନଙ୍କୁ ଏକତ୍ରିତ କରି ସେ ମନ୍ତ୍ରଣା କରିବାକୁ ଲାଗିଲେ । ଦୁର୍ଗକୁ ଅଧିକାର କରିବାର ଅନେକ ଉପାୟ ଉଦ୍ଭାବିତ ହେଲା, କିନ୍ତୁ ସେଗୁଡ଼ିକ ଅସମ୍ଭବ-ଜ୍ଞାନରେ ପରିତ୍ୟକ୍ତ ହେଲା । ମରହଟ୍ଟା-ଶିବିରରେ ବିଷାଦର ରାଜ୍ୟ ପ୍ରତିଷ୍ଠିତ ହେଲା ।

ନାନାସାହେବ ଚିନ୍ତାକୁଳ ମନରେ ଶିବିର ପରିତ୍ୟାଗ କରି ମହାନଦୀ କୂଳରେ ବିଚରଣ କରିବାକୁ ଲାଗିଲେ । ଜ୍ୟୋତ୍ସ୍ନା-ସ୍ନାତ ଲହଣ୍ଡାପର୍ବତର ସ୍ୱର୍ଗୀୟ କାନ୍ତି ତାହାଙ୍କର ଦୃଷ୍ଟି ପଥାରୂଢ଼ ହେଲା । କି ଅଲୌକିକ ସୌନ୍ଦର୍ଯ୍ୟ ! ସମ୍ମୁଖରେ ସୌନ୍ଦର୍ଯ୍ୟରେ କମ୍ପମାନା କଲନାଦିନୀ ପର୍ବତ-ସ୍ରୋତସ୍ୱତୀ । ମସ୍ତକରେ ନୀଳ ଆକାଶ, ସତେ ଯେପରି ଉପରୁ ନୀଳିମା ଥପ ଥପ ହୋଇ ପଡ଼ୁଛି । ନାନାସାହେବ ମୁଗ୍ଧ ନେତ୍ରରେ ଏ ଅପରୂପ

---

୧ । ନାଗପୁରାଧିପତି ରଘୁଜି ଭୌଁସ୍ଲାଙ୍କ ଭାଇ (Cousin)

ସୌନ୍ଦର୍ଯ୍ୟ ଦେଖିବାକୁ ଲାଗିଲେ । କିନ୍ତୁ ପରମୁହୂର୍ତ୍ତରେ ସବୁ ଅନ୍ଧକାର ହୋଇଗଲା । ପ୍ରକୃତିର ସେ ଚାରୁଶିଳ୍ପ କେଉଁଆଡେ ଉଭେଇ ଗଲା । ସେ ବିଷଣ୍ଣ ମନରେ ରୋଦନ କରିବାକୁ ଲାଗିଲେ ।

କିଛିକ୍ଷଣ ପରେ ଚକ୍ଷୁ ଉନ୍ମୀଳନ କରି ଦେଖିଲେ ଯେ, ଜଣେ ଯୁବକ ମହାନଦୀ–ବକ୍ଷରେ ଶିଳା ଉପରେ ବସିଛନ୍ତି । ଯୁବକଙ୍କ ପରିଚ୍ଛଦ ଦେଖି ତାଙ୍କୁ ଶତ୍ରୁପକ୍ଷୀୟ ଭାବି ଭୀଷଣ ଗର୍ଜ୍ଜନ ସହ ତାଙ୍କ ଉପରେ ଲମ୍ଫ ପ୍ରଦାନ କଲେ । କିନ୍ତୁ ଯୁବକ ପର୍ବତ ପ୍ରାୟ ଅଟଳ—ପ୍ରତ୍ୟାକ୍ରମଣର ଚେଷ୍ଟା-ମାତ୍ର-ବିରହିତ । ସେ ନାନାସାହେବଙ୍କ ଆଡକୁ ନୀରବରେ ଅଗ୍ରସର ହୋଇ ତାଙ୍କୁ ଆଲିଙ୍ଗନ-ପାଶରେ ଆବଦ୍ଧ କଲେ । ଯୁବକଙ୍କ ଏପରି ରୀତି ଦେଖି ନାନାସାହେବ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ସେମାନଙ୍କ ମଧ୍ୟରେ ଅନେକ କଥାବାର୍ତ୍ତା ହେଲା; କିନ୍ତୁ ସେ ଗୁପ୍ତ କଥାବାର୍ତ୍ତା କେହି ଶୁଣି ନାହାନ୍ତି । ଏଣୁକରି ପାଠକମାନଙ୍କୁ ତାହା ଉପହାର ଦେଇ ନ ପାରି ଆମ୍ଭେମାନେ ଦୁଃଖିତ । କେବଳ ଲୋକଙ୍କ ମୁଖରୁ ଶୁଣିଛୁଁ ଯେ ଯୁବକଙ୍କ ନାମ ଉଦିତପ୍ରତାପ ।

## ଚତୁର୍ଥ ପରିଚ୍ଛେଦ

### ଘୋର ଅନ୍ଧକାର

" ଧନ୍ୟ ସେ ପ୍ରୀତିକି ! ମରଣ-ଭୀତିକି
ପ୍ରୀତି ସେ ପାରଇ ଜିଣି ;
ଶିରୀଷ-ମୃଦୁଳା ଲବଣୀ–ପିଚ୍ଛଳା
ପ୍ରୀତି କଲା ସାହସିନୀ ।"

—କେଦାରଗୌରୀ ।

" କିନ୍ତୁ ଏ ରକ୍ତ-ପାତରେ ତୁମ୍ଭର ଲାଭ ?"

"ଲାଭ ! ଦେଶର ଶତ୍ରୁକୁ ବିନାଶ କରି ଜନ୍ମଭୂମିର ସ୍ୱାଧୀନତା ରକ୍ଷା କରିବି । ଏହା କଣ କ୍ଷତ୍ରିୟ ବୀରର ଚରମ ଲାଭ ନୁହେଁ ?"

"ଏପରି ଭାବିବା ମୂର୍ଖତା ଭିନ୍ନ ଆଉ କିଛି ନୁହେଁ । ମରହଟ୍ଟାମାନେ ଚିର-ବିଜୟୀ । ସେମାନଙ୍କ ସଙ୍ଗେ ଯୁଦ୍ଧ କରି କାହିଁକି ପରାଜିତ ହେବି ? ବରଂ ସେମାନଙ୍କୁ ସାହାଯ୍ୟ କଲେ ନିଜେ ଜମି-ଜାଗିର ପାଇ ବଡ଼ ଲୋକ ହୋଇ ପାରିବି ।"

"ସେ କି, ଉଦିତପ୍ରତାପ ! ତୁମ ମୁଖରେ ଏପରି କଥା ! କ୍ଷମା କରିବ । ମୁଁ ସେ କାର୍ଯ୍ୟ ପାରିବି ନାହିଁ । ଆଜି ସୁଦ୍ଧା ଧର୍ମ ଅଛି । ପୂର୍ବପରି ଆଜି ସୁଦ୍ଧା ଚନ୍ଦ୍ର-ସୂର୍ଯ୍ୟ ଉଦିତ ହେଉଛନ୍ତି । ତୁମେ ସେ କୁଟିଳ ମନ୍ତ୍ରଣା ଛାଡ଼ । ଦେଶର ଶତ୍ରୁକୁ ବିନାଶ କରି ଧନ୍ୟ ହୁଅ ।"

"ଶତ୍ରୁ-ବିନାଶ ! ଯୁଦ୍ଧ ! ନା—ଜୟପରାଜୟର ଅନିଶ୍ଚିତ ସ୍ଥାନକୁ ଯିବା ଠିକ୍ ନୁହେଁ ।"

"ନା—ହେଲା ! ସେପରି କହନା ।" ଏହା କହି ପ୍ରସନ୍ନକୁମାର ତୀକ୍ଷ୍ଣଦୃଷ୍ଟିରେ ଉଦିତପ୍ରତାପଙ୍କ ମୁଖ ଆଡ଼କୁ ଅନାଇବାକୁ ଲାଗିଲେ । କିନ୍ତୁ ଉଦିତପ୍ରତାପ ସ୍ଥିର-ସଂକଳ୍ପ । ସେ ମରହଟ୍ଟାମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବେ ନାହିଁ । ପ୍ରସନ୍ନକୁମାରଙ୍କ କଥା ଶୁଣି ତାଙ୍କ ଭ୍ରୂ-ଯୁଗଳ ଈଷତ୍ କୁଞ୍ଚିତ ହେଲା—ନୟନରୁ ବକ୍ର ଜ୍ୟୋତି ନିର୍ଗତ ହେଲା । ସେ କିଛି ନ କହି ବଂଶୀବାଦନ କଲେ । ବଂଶୀବାଦନ ସଙ୍ଗେ ସଙ୍ଗେ ବହୁସଂଖ୍ୟକ ମରହଟ୍ଟା-ସୈନିକ "ବମ୍ ବମ୍ ମହାଦେଓ" ରବ କରି ତୋରଣ ଆଡ଼କୁ ଧାବମାନ ହେଲେ ଓ ପ୍ରସନ୍ନକୁମାରଙ୍କୁ ଘେରି ପକାଇଲେ । ପ୍ରସନ୍ନକୁମାର କିଂକର୍ତ୍ତବ୍ୟ-ବିମୂଢ଼ ହୋଇ ଏ ସବୁ ଦେଖିବାକୁ ଲାଗିଲେ । ଉଦିତପ୍ରତାପ ପ୍ରତିହିଂସା-ସାଧନର ଉପଯୁକ୍ତ ସମୟ ପାଇ ଖଡ୍ଗହସ୍ତରେ ପ୍ରସନ୍ନକୁମାରଙ୍କ ଆଡ଼କୁ ଧାବମାନ ହେଲେ । କିନ୍ତୁ ପ୍ରସନ୍ନକୁମାରଙ୍କ ମୁଣ୍ଡ ନ ଛିଣ୍ଡୁଣୁ ପଛରୁ କିଏ ଆସି ତାଙ୍କ ମସ୍ତକକୁ ଶରୀରରୁ ବିଚ୍ଛିନ୍ନ କଲା । ସୈନିକମାନେ ବିସ୍ମୟାବିଷ୍ଟ

ନେତ୍ରରେ ଦେଖିଲେ ଯେ, ଜଣେ ସନ୍ୟାସିନୀ ଉଦ୍ଧତପ୍ରତାପଙ୍କ ଛିନ୍ନ ମସ୍ତକକୁ ହସ୍ତରେ ଧରି କେଉଁଆଡ଼େ ଚାଲିଗଲା । ତାକୁ ଖୋଜିବା ପାଇଁ ସେମାନେ ଅନେକ ଚେଷ୍ଟା କଲେ, କିନ୍ତୁ କୌଣସିଠାରେ ପାଇଲେ ନାହିଁ । ପ୍ରସନ୍ନକୁମାର ବିସ୍ମିତ, ସ୍ତମ୍ଭିତ ହୋଇ ଏହା ଦେଖିବାକୁ ଲାଗିଲେ ।

ଉଦ୍ଧତପ୍ରତାପଙ୍କ ମସ୍ତକ ଶରୀରରୁ ବିଚ୍ୟୁତ ହେଲା । ସେଥି ସଙ୍ଗେ ସଙ୍ଗେ ସମ୍ବଲପୁରର ସ୍ୱାଧୀନତା ରବି ମଧ୍ୟ ଅସ୍ତମିତ ହେଲା । ମରହଟ୍ଟାମାନେ ଅପ୍ରତ୍ୟାଶିତଭାବରେ ସମଲାଇ-ଫାଟକ (୧) ବାଟେ ଦୁର୍ଗ ମଧ୍ୟରେ ପ୍ରବେଶ କରି ଜୟନ୍ତ ସିଂହ ଓ ତଦୀୟ ପୁତ୍ର ମହାରାଜ ସାଏଙ୍କୁ ବନ୍ଦୀ କଲେ । ସମ୍ବଲପୁର-ଦୁର୍ଗ ଶତ୍ରୁମାନଙ୍କ ହସ୍ତଗତ ହେଲା । ପ୍ରସନ୍ନକୁମାର ପ୍ରାଣପଣେ ଚେଷ୍ଟା କରି ସୁଦ୍ଧା ଦୁର୍ଗ ରକ୍ଷା କରିପାରିଲେ ନାହିଁ । ତାଙ୍କ ଆହତ ଶରୀର ଧରାଶାୟୀ ହେଲା । ସମ୍ବଲପୁରର ମୁଖ ବିଷାଦ-କାଳିମା-ରଞ୍ଜିତ ହେଲା । ସ୍ୱାଧୀନ ଜାତି ପରାଧୀନ ହେଲା ! ହାୟ ଉଦ୍ଧତପ୍ରତାପ ! ଶେଷକୁ ବିମଳାର **ରୂପର ମୂଲ୍ୟ** ସ୍ୱରୂପ ସ୍ୱଦେଶର ସ୍ୱାଧୀନତା ବିକ୍ରୟ କଲ ! ! !

* * *

କିନ୍ତୁ ଏ ସନ୍ୟାସିନୀ କିଏ ? ତମୋମୟୀ ରଜନୀରେ ଶ୍ମଶାନରେ ବସି କଣ କରୁଛି ? ସନ୍ୟାସିନୀ ବ୍ୟଥିତ ମନରେ, ଆକୁଳ ପ୍ରାଣରେ ଆକାଶକୁ ଅନାଇ ଗୀତ ଗାଇବାକୁ ଲାଗିଲା ।—

କିପାଁ ଦୟାମୟ ହୋଇଣ ନିର୍ଦ୍ଦୟ ଦେଲ ଏ ହୀନ ଜନମ;
କାନ୍ଦି କାନ୍ଦି ହରି ଗଲଣି ତ ସରି ପୋଡ଼ୁ ଏ ହୀନ କରମ । ୦ ।
ହେଲି ମୁଁ ସଂସାରେ ଘୋର ଅଭିଶାପ;
ଯହିଁ ଗଲି ତହିଁ ବିଞ୍ଚୁଅଛି ପାପ;
ଜଗତର ତପ୍ତ ଶୋଣିତ-ପ୍ରବାହେ ହେଉଅଛି ଭାସମାନ । ୧ ।

---

(୧) ସମଲେଶ୍ୱରୀଙ୍କ ମନ୍ଦିର ନିକଟରେ ଏହାର ଭଗ୍ନାବଶେଷ ଅଦ୍ୟାପି ବିଦ୍ୟମାନ ଅଛି ।

ଅଶାନ୍ତିର ମନ୍ତ୍ର ପଢ଼ିଲି ଜଗତେ,
ବୁଡ଼ିଅଛି ଏବେ ସ୍ୱଦେଶ-ରକତେ;
ଧିକ ମୋର ରୂପ, ଧିକ ଯଉବନ, ଧିକ ଏ ମୋର ଜୀବନ । ୨ ।
ଅସାର-ସଂସାର-ଅପାର-ଯାତନା
ଦେଉଅଛି ମତେ ବିଷମ ଲାଞ୍ଛନା;
ପ୍ରେମମୟ ହରି, କରୁଣା ବିସ୍ତାରି ପାଦ-ପଦ୍ମେ ଦିଅ ସ୍ଥାନ । ୩ ।

ଶ୍ମଶାନ-କ୍ରୋଡରେ ଶୟାନ ଯନ୍ତ୍ରଣା-କାତର ପ୍ରସନ୍ନକୁମାର ଏ ସୁମଧୁର ସଙ୍ଗୀତ ଶୁଣି ମୁଗ୍ଧ ହୋଇଗଲେ । ତାଙ୍କ ରୁଧିରାକ୍ତ ମୁଖରେ ହାସ୍ୟର ବିମଳ ରେଖା ଝଲସି ଉଠିଲା । କେଉଁ ଅଜ୍ଞାତ ପ୍ରଦେଶରୁ ଅମୃତ-ଝଙ୍କାର ଆସି ତାଙ୍କୁ ଗୋଟିଏ ମୋହମୟ ଶାନ୍ତିମୟ ରାଜ୍ୟକୁ ନେଇଗଲା । ସେଠାରେ ସେ ସ୍ୱର୍ଗର ଚିତ୍ର ଦେଖିବାକୁ ପାଇଲେ । କିଏ ଯେପରି ତାଙ୍କ ନିକଟକୁ ଆସି ଚିର-ପରିଚିତ ବୀଣା-ଜଣା ସ୍ୱରରେ ତାଙ୍କୁ ଡାକି ଗୋଟିଏ ସ୍ୱପ୍ନମୟ କୁଞ୍ଜରେ ତାଙ୍କୁ ବସାଇ ନିଜେ ତାଙ୍କ ନିକଟରେ ବସିଲା । ପ୍ରସନ୍ନକୁମାରଙ୍କ ଶରୀର ପୁଲକିତ ହୋଇଗଲା । ସେ ଅଲୌକିକ ସୌନ୍ଦର୍ଯ୍ୟ, ଅପ୍ସରା-ସମ୍ଭବ ଜ୍ୟୋତି, କିନ୍ନର-କଣ୍ଠ ତାଙ୍କ ମନରେ ଯେପରି ପ୍ରାଚୀନ ସ୍ମୃତି ଅଙ୍କିତ କଲା । ସେ ଚକ୍ଷୁ ଖୋଲି ଦେଖିଲେ, ତାଙ୍କ ନିକଟରେ ଜଣେ ମୁକୁଳିତ-କେଶପାଶା, ଗୈରିକ-ବସନା, ଅନନ୍ୟସୁନ୍ଦରୀ ସନ୍ୟାସିନୀ-ମୂର୍ତ୍ତି ବସିଅଛି । ତାକୁ ଦେଖି ପ୍ରସନ୍ନକୁମାରଙ୍କ ଶରୀରରେ ସିଂହ-ବିକ୍ରମ ଉଦିତ ହେଲା । ସେ ଗାତ୍ରୋତ୍ଥାନ କରି ସନ୍ୟାସିନୀଙ୍କୁ ଆଲିଙ୍ଗନ କରି କହିଲେ "ବିମଳା ! —ବିମଳା—" ଆଉ କହି ପାରିଲେ ନାହିଁ । ତାଙ୍କ ଶରୀର ଅବସନ୍ନ ହୋଇଗଲା । ଶରୀରର କ୍ଷତ-ସ୍ଥାନମାନଙ୍କରୁ ପ୍ରବଳ ବେଗରେ ରୁଧିର ବହିବାକୁ ଲାଗିଲା । ପ୍ରାଣ-ହୀନ ପିଣ୍ଡ ଧରା-ଲୁଣ୍ଠିତ ହେଲା ।

ବିମଳା ଏହା ଦେଖି ବିକଳରେ ରୋଦନ କରିବାକୁ ଲାଗିଲା । ତାହାର ଜୀବନର ଧ୍ରୁବତାରା ଅସ୍ତମିତ ହେଲା । ସେ ଉତ୍ତରୀୟମଧ୍ୟରୁ

ତୀକ୍ଷ୍ଣ ଛୁରିକା ବାହାର କରି ନିଜ ବକ୍ଷ-ଦେଶରେ ବିଦ୍ଧ କଲା । ଯନ୍ତ୍ରଣାପ୍ରତି ଲକ୍ଷ୍ୟ ନ କରି ରୁଧିରାକ୍ତ-କଳେବରରେ ପ୍ରସନ୍ନ କୁମାରଙ୍କ ରୁଧିରାକ୍ତ ଶରୀରକୁ ଆଲିଙ୍ଗନ କଲା । ଆହା ! ସେ ଅନ୍ତିମ ଆଲିଙ୍ଗନ — ସେ ଅନ୍ତିମ ଚୁମ୍ବନ— କେଡେ ପବିତ—କେଡେ ମଧୁର ! ସେ ଲୋତକରେ ଅମୃତ, ରକ୍ତରେ ମନ୍ଦାକିନୀ ! ଏ ସ୍ୱାର୍ଥତ୍ୟାଗର ପବିତ୍ର ତପୋବନହିଁ ସ୍ୱର୍ଗ !

# ପ୍ରଦୀପ-ନିର୍ବାଣ

ଆଜି ତ୍ରିବେଣୀ-ଘାଟରେ ଅସଂଖ୍ୟ ଯାତ୍ରିଙ୍କର ସମାଗମ । ବୀର ଶ୍ରୀ ଗୌଡ଼େଶ୍ୱର ନବକୋଟି-କର୍ଣ୍ଣାଟ-କଲବର୍ଗେଶ୍ୱର ରାଜା ମୁକୁନ୍ଦ ଦେବ ତ୍ରିବେଣୀ ଘାଟ ନିର୍ମାଣ କାର୍ଯ୍ୟ ସମାପନ କରି ମହା ସମାରୋହସହକାରେ ଘାଟର ପ୍ରତିଷ୍ଠା କରୁ ଅଛନ୍ତି । ସେ ସ୍ୱୀୟ ବାହୁବଳରେ ତ୍ରିବେଣୀ ଘାଟ ପର୍ଯ୍ୟନ୍ତ ଦେଶ ଜୟ କରି ସ୍ୱୀୟ ରାଜ୍ୟର ସୀମାନିର୍ଦ୍ଦେଶ ନିମନ୍ତେ ଏହି ଘାଟ ନିର୍ମାଣ କରି ଅଛନ୍ତି । ଏହା ଘାଟ-ନିର୍ମାଣର ଐତିହାସିକ ବ୍ୟାଖ୍ୟା । କିନ୍ତୁ ଲୋକେ କହନ୍ତି, ଏହି ଘାଟ-ନିର୍ମାଣର ମୂଳରେ ଧର୍ମପ୍ରାଣତା ବିଦ୍ୟମାନ । ଜଗତର ପାପି-ତାପିଙ୍କୁ ପାପର କରାଳ କବଳରୁ ରକ୍ଷା କରିବା ନିମନ୍ତେ ରାଜା ମୁକୁନ୍ଦଦେବ ତ୍ରିଲୋକ-ପାବନୀ ଗଙ୍ଗା ତଟରେ ଏହି ଘାଟ ନିର୍ମାଣ କରି ଅଛନ୍ତି । ଘାଟର ପ୍ରତିଷ୍ଠା ନିମନ୍ତେ ଗଙ୍ଗା-କୂଳରେ ଏ ବିପୁଳ ଆୟୋଜନ; ଘାଟର ପ୍ରତିଷ୍ଠା-କର୍ତ୍ତା ରାଜା ଶ୍ରୀ ମୁକୁନ୍ଦ ଦେବ ।

ଆଜି ମୁକୁନ୍ଦ ଦେବଙ୍କର କଳ୍ପତରୁ-ବେଶ । ତୀର୍ଥମାନଙ୍କ ନିମନ୍ତେ ରାଜକୋଷର ଦ୍ୱାର ଉନ୍ମୁକ୍ତ । ମହାରାଜ ପ୍ରତାପରୁଦ୍ରଙ୍କ ସମୟରୁ ଓଡ଼ିଶାର ରାଜାମାନେ ବୈଷ୍ଣବଜଗତରେ ଅଦ୍ୱିତୀୟ ଆଧିପତ୍ୟ ବିସ୍ତାର କରି ଆସୁ-ଅଛନ୍ତି । ଅମ୍ଭେମାନେ ଯେଉଁ ସମୟର କଥା କହୁଅଛୁଁ, ସେ ସମୟରେ ବୈଷ୍ଣବ ଧର୍ମାବଲମ୍ବୀମାନେ ପୁରୀ ମହାରାଜାଙ୍କୁ "Pope" ରୂପେ ଭକ୍ତି

କରୁଥିଲେ । ଅଧୁନା ପୁରୀର ସିଂହାସନ ରାଜନୈତିକ-ଦାୟିତ୍ୱ ଶୂନ୍ୟ ହେଲେ ସୁଦ୍ଧା ଧର୍ମ ଦୃଷ୍ଟିରେ ତାହାର ପ୍ରାଚୀନ ଗୌରବ ଅକ୍ଷୁଣ୍ଣ ରହିଅଛି । ଆଜିସୁଦ୍ଧା ଧର୍ମପ୍ରାଣ ହିନ୍ଦୁମାନେ ପୁରୀ ରାଜାଙ୍କୁ ପୂର୍ବବତ୍ ସମ୍ମାନ କରନ୍ତି । ମୁକୁନ୍ଦ ଦେବଙ୍କ ସମୟରେ ବୈଷ୍ଣବ ଧର୍ମାବଲମ୍ବିମାନେ ଗୂଢ଼ ଆଧ୍ୟାତ୍ମିକ ତତ୍ତ୍ୱର ମୀମାଂସା ନିମନ୍ତେ ପୁରୀ ରାଜାଙ୍କ ଦ୍ୱାରସ୍ଥ ହେଉଥିଲେ । ଧର୍ମ ରାଜ୍ୟରେ କୌଣସି ବିପ୍ଳବ ଘଟିଲେ କିମ୍ବା କେହି ଧର୍ମରୁ ବିଚ୍ୟୁତ ହେଲେ ପୁରୀ ରାଜାଙ୍କ ନିଷ୍ପତ୍ତି ଉପରେ ସମସ୍ତେ ନିର୍ଭର କରୁଥିଲେ ।

ଯୁଦ୍ଧକ୍ଷେତ୍ରରେ ଓ ଧର୍ମକ୍ଷେତ୍ରରେ ସମଭାବରେ ଏତାଦୃଶ ପ୍ରତିଷ୍ଠା କୌଣସି ଜାତି କୌଣସି ଯୁଗରେ ଲାଭକରି ନାହିଁ । ପୃଥିବୀର ଇତିହାସରେ ଶୌର୍ଯ୍ୟର ଉଜ୍ଜ୍ୱଳତର ଚିତ୍ର ଥାଇପାରେ— ଧର୍ମର ମଧ ଉଜ୍ଜ୍ୱଳତର ଚିତ୍ର ଥାଇପାରେ; କିନ୍ତୁ ଯୁଦ୍ଧ ଓ ଧର୍ମର ଏତାଦୃଶ ଏକତ୍ର ସମାବେଶ ପୃଥିବୀରେ ବିରଳ । ଏ ବିଷୟରେ କେବଳ ଓଡିଆଜାତି ପୃଥିବୀରେ ଖ୍ୟାତି ଲଭିଅଛି, ଏବଂ ଯେଉଁ ସମୟରେ ଓଡିଶାର ଗୃହେ ଗୃହେ ଏହି ପବିତ୍ର ଧର୍ମ ପ୍ରଚରିତ ହେଉଥିଲା, ସେହି ସମୟ ଓଡିଶାର ସର୍ବଶ୍ରେଷ୍ଠ ଯୁଗ ।

୨

ଆଜି ତ୍ରିବେଣୀ ଘାଟ ଲୋକାରଣ୍ୟ ହୋଇଅଛି । ସ୍ୱର୍ଣ୍ଣ ସିଂହାସନ ଉପରେ ମୁକୁନ୍ଦଦେବ ଓ ତାହାଙ୍କ ରାଣୀ ସମାସୀନ ହୋଇଛନ୍ତି । ବେଦଜ୍ଞ ବ୍ରାହ୍ମଣମାନେ ନିକଟରେ ଉପବିଷ୍ଟ ହୋଇ ପବିତ୍ର ବେଦମନ୍ତ୍ର ଉଚ୍ଚାରଣ କରୁଛନ୍ତି । ଅଦୂରରେ ପୂତ-ସଲିଳ ଜାହ୍ନବୀ ମୃଦୁ-ବାତ-ସଞ୍ଚାଳିତ ଲହରୀ-- ଦୋଳାରେ ଦୋଳାୟିତ ହୋଇ ଭୁବନ-ମୋହନ ବେଶରେ ଗମନ କରୁଅଛନ୍ତି ।

ପ୍ରତିଷ୍ଠା କାର୍ଯ୍ୟ ସମାପ୍ତ ହେଲାରୁ ଦାନ କାର୍ଯ୍ୟ ଆରମ୍ଭ ହେଲା । ଅର୍ଥି-ତୀର୍ଥୀମାନେ ରାଜାଙ୍କ ଦର୍ଶନ ଲାଭ କରିବାକୁ ଆଦିଷ୍ଟ ହେଲେ ।

କ୍ରମେ ଅର୍ଘ୍ୟ-ସ୍ରୋତ ପ୍ରବଳବେଗରେ ବହିବାକୁ ଲାଗିଲା । କାହାରି ମୁଖରେ ବିଷାଦର ଚିହ୍ନ ସୁଦ୍ଧା ନାହିଁ । ସମସ୍ତେ ଅଭୀଷ୍ଟ ଫଳ ପ୍ରାପ୍ତ ହୋଇ ହୃଷ୍ଟ-ଚିତ୍ତରେ ପ୍ରତ୍ୟାବୃତ୍ତ ହେଉଅଛନ୍ତି ।

କିନ୍ତୁ ଗଙ୍ଗା-ଗର୍ଭରେ ଦଣ୍ଡାୟମାନ କିଏ ସେ ଯୁବକ ? ତାଙ୍କ ମୁଖରେ ପ୍ରାର୍ଥନାର ନାମମାତ୍ର ନାହିଁ । ସେ ଗ୍ରୀବା-ସ୍ପର୍ଶୀ ଜଳରେ ଦଣ୍ଡାୟମାନ ହୋଇ ରାଜାଙ୍କ ଆଡ଼କୁ ଅନିମେଷ ନେତ୍ରରେ ଚାହିଁ ଅଛନ୍ତି । ରାଜାଙ୍କ ଦୃଷ୍ଟି ମଧ୍ୟ ଅନେକ ଥର ତାଙ୍କ ଉପରେ ପଡ଼ି ସାରିଲାଣି ; କିନ୍ତୁ ଏ ପର୍ଯ୍ୟନ୍ତ କେହି କାହାରିକି କିଛି କହି ନାହାନ୍ତି ।

କ୍ରମେ ଅର୍ଘ୍ୟ-ସ୍ରୋତ ବନ୍ଦ ହେବାକୁ ବସିଲା । ରାଜାଙ୍କ ସମଗ୍ର ଦୃଷ୍ଟି ଜଳମଧ୍ୟସ୍ଥ ଯୁବକଙ୍କ ଉପରେ ନିପତିତ ହେଲା । ରାଜା କହିଲେ, "ଜଳମଧ୍ୟରେ କାହିଁକି ଛିଡ଼ା ହୋଇଛ, ଯୁବକ ? ତୁମ୍ଭର ଭାବ ଭଙ୍ଗୀରୁ ଜଣାଯାଏ, ତୁମ୍ଭେ ଯେପରି କିଛି ମାଗିବାକୁ ଆସିଛ । କିନ୍ତୁ ଏତେବେଳ ପର୍ଯ୍ୟନ୍ତ ନୀରବ ରହିଅଛ କାହିଁକି ?"

ରାଜାଙ୍କ ବାଣୀ ଶୁଣି ଯୁବକ ମସ୍ତକ ଅବନତ କଲେ । ତାଙ୍କ ହୃଦୟ ଭିତରେ ସେ ଯେପରି ବିବେକର ତୀବ୍ର ତାଡ଼ନା ଅନୁଭବ କରିବାକୁ ଲାଗିଲେ । ସେ କଣ କହିବାକୁ ଯାଉଥିଲେ—କିଛି କହିପାରିଲେ ନାହିଁ । ପରିଶେଷରେ ରାଜାଙ୍କ ଅଭୟ ବାଣୀରେ ଆସ୍ଥା ସ୍ଥାପନ କରି କହିଲେ, "ମହାରାଜ, ମୋର ଜିଜ୍ଞାସ୍ୟ ବିଷୟ ଅତି ଗୁରୁତର । ଅଭୟ ପ୍ରଦାନ କଲେ ବକ୍ତବ୍ୟ ଜ୍ଞାପନ କରିବି ।"

ରାଜା ଅଭୟ ପ୍ରଦାନ କଲେ । ଯୁବକ ଜଳମଧ୍ୟରୁ ବହିର୍ଗତ ହୋଇ ରାଜାଙ୍କ ସମୀପରେ ଦଣ୍ଡାୟମାନ ହେଲେ । ସେ ରାଜାଙ୍କୁ ଅଭିବାଦନ କରିବେ ନା ଆଶୀର୍ବାଦ ଦେବେ, ପ୍ରଥମେ କିଛି ସ୍ଥିର କରି ପାରିଲେ ନାହିଁ । ପରେ ମନରେ କଣ ଭାବି ରାଜାଙ୍କୁ ଅଭିବାଦନ କରି

କହିଲେ, "ମହାରାଜ, ମୁଁ ଶୁଣିଅଛୁ ଓ ସ୍ୱଚକ୍ଷୁରେ ଦେଖିଅଛୁ ଯେ, ଆପଣ ଆଜ କଳ୍ପତରୁ-ବେଶ ଧାରଣ କରି ଅଛନ୍ତି । ସେଥିପାଇଁ ସାହସ କରି ଆପଣଙ୍କ ନିକଟକୁ ଆସିଅଛୁ ।"

"ତୁମ୍ଭର ବକ୍ତବ୍ୟ କଣ, ଶୀଘ୍ର ପ୍ରକାଶ କର ।"

"ମହାରାଜ, ମହାତ୍ମା ଚୈତନ୍ୟ ଦେବଙ୍କ ପ୍ରସାଦରୁ ଅନେକ ଯବନ ହିନ୍ଦୁ ଧର୍ମରେ ଦୀକ୍ଷିତ ହୋଇ ଅଛନ୍ତି । କିନ୍ତୁ ଧର୍ମଭ୍ରଷ୍ଟ ହିନ୍ଦୁର ସ୍ୱଧର୍ମରେ ପୁନର୍ଦୀକ୍ଷାର କୌଣସି ବ୍ୟବସ୍ଥା ନାହିଁ କି ?"

"ବିଧର୍ମୀକୁ ସଦ୍ଧର୍ମକୁ ଅଣା ଯାଇ ପାରେ । କିନ୍ତୁ ଯେ ସ୍ୱଧର୍ମରେ ଅନାସ୍ଥାଯୁକ୍ତ, ତାହା ନିମନ୍ତେ କୌଣସି ବ୍ୟବସ୍ଥା କରିଯାଇ ନ ପାରେ ।"

"ମନୁଷ୍ୟର ଧର୍ମ କଣ ? ଧର୍ମନାମରେ କୌଣସି ଦୃଶ୍ୟମାନ ବସ୍ତୁ ନାହିଁ । ଯେ ଯେପରି ଭାବରେ ଧର୍ମ ବିଷୟରେ ଧାରଣା କଲା, ତାହାର ଧର୍ମ ତାହା । ପୁଣି ମନୁଷ୍ୟର ମାନସିକ ଚିନ୍ତାର କ୍ରମବିକାଶ ସଙ୍ଗେ ସଙ୍ଗେ ତାହାର ମନୋଗତ ଭାବର ପରିବର୍ତ୍ତନ ହେଉଅଛି । ଏପରି ସ୍ଥଳରେ ଗୋଟିଏ ଭାବ ଛାଡି ଭାବାନ୍ତର ଗ୍ରହଣ କଲେ ଦୋଷ କଣ ?"

"ଭାବାନ୍ତର ଗ୍ରହଣ ଦୋଷାବହ ନୁହେ । କିନ୍ତୁ ଜାଣିଶୁଣି ଅକାରଣ ଭାବପରିବର୍ତ୍ତନ କରିବା ଦୋଷାବହ । ସ୍ୱେଚ୍ଛାଚାର ଓ ସ୍ୱାଧୀନ ଚିନ୍ତାମଧ୍ୟରେ ଅନେକ ପ୍ରଭେଦ ଅଛି । ସ୍ୱେଚ୍ଛାଚାରଜନିତ ପାପ ନିମନ୍ତେ ଅନୁତାପହିଁ ଏକମାତ୍ର ପ୍ରାୟଶ୍ଚିତ୍ତ ।"

"ଭାବାନ୍ତରଗ୍ରହଣ ସ୍ୱେଚ୍ଛାଚାରପ୍ରଣୋଦିତ ହେଉ କିମ୍ବା ସ୍ୱାଧୀନ-ଚିନ୍ତା-ପ୍ରସୂତ ହେଉ, ତହିଁ ନିମନ୍ତେ ଅନୁତାପ ପ୍ରକାଶ କରିବା କାପୁରୁଷତାର ଧିଚାୟକ । ମନୁଷ୍ୟକୁ ଗୋଟିଏ ବିଷୟ ଭଲ ନ ଲାଗିଲେ ସେ ବିଷୟାନ୍ତର ଗ୍ରହଣ କରିପାରେ । ଏଥିପାଇଁ କେହି କିଛି ଆପତ୍ତି କରିବା ଅସୁନ୍ଦର କଥା ।"

"ଧର୍ମ କ୍ରୀଡାର ପୁତ୍ତଳିକା ନୁହେ, ଯୁବକ, ଯେ ତୁମ୍ଭେ ତାକୁ ଇଚ୍ଛାନୁସାରେ ନଚାଇ ପାରିବ । ପାପୀ ଅନୁତପ୍ତ ହେଲେ ଈଶ୍ୱର ତାକୁ ଗ୍ରହଣ କରନ୍ତି । କିନ୍ତୁ ଏହି ଅନୁତାପ ବଚନ-ସର୍ବସ୍ୱ ନୁହେ । ଏହା ହୃଦୟ ଭିତରୁ ବାହାରିଲେ ସ୍ୱୟଂ ଈଶ୍ୱରଙ୍କ ଆସନକୁ ଟଳାଇ ପକାଏ । ଏଥିନିମନ୍ତେ କାହାରିକୁ ପ୍ରାର୍ଥନା କରିବାକୁ ହୁଏ ନାହିଁ । ଯେତେବେଳେ ସମୟ ଆସିବ ଈଶ୍ୱର ନିଜେ ପାପୀକୁ ଗ୍ରହଣ କରିବେ ।"

"ଅନୁତାପ ପୂର୍ବେ ଏ ଗ୍ରହଣ ସମ୍ଭବ ନୁହେ କି ?"

"କଦାପି ନୁହେ ।"

ରାଜାଙ୍କଠାରୁ ନିରାଶଜନକ ଉତ୍ତର ପାଇ ଯୁବକ ଅତ୍ୟନ୍ତ ବ୍ୟଥିତ ହେଲେ । କିନ୍ତୁ ଏ କଣ ? ସେ ରାଣୀଙ୍କ ଆଡକୁ ବାରମ୍ବାର ଅନାଉଛନ୍ତି କାହିଁକି ? ରାଣୀଙ୍କୁ ଦେଖି ତାଙ୍କ ମନର ଭାବ ପରିବର୍ତ୍ତିତ ହେଉଛି କାହିଁକି ?

ଯୁବକଙ୍କୁ ନିରୁତ୍ତର ଦେଖି ରାଜା ପୁନର୍ବାର କହିଲେ, "ଆଉ କିଛି ବକ୍ତବ୍ୟ ଥିଲେ କହ ।"

"ମୋର ବକ୍ତବ୍ୟ ମୁଁ ଯୁଦ୍ଧ-କ୍ଷେତ୍ରରେ ବ୍ୟକ୍ତ କରିବି ।" ଏହା କହି ଯୁବକ ଉକ୍ତ ସ୍ଥାନ ପରିତ୍ୟାଗ କଲେ ।

୩

ସୁଲତାନ୍ ସୁଲେମାନଙ୍କ ସମୟରେ ବଙ୍ଗ ଦେଶରେ ଜଣେ ନୈଷ୍ଠିକ ବ୍ରାହ୍ମଣ ବାସ କରୁଥିଲେ । ତାଙ୍କୁ ଲୋକେ "କାଲା ପାହାଡ" ବୋଲି ଡାକୁଥିଲେ । "କାଲା ପାହାଡ" ଶବ୍ଦର ଅର୍ଥ ବଧୀର ପର୍ବତ । ସେ ଏପରି ସଂଯମଶୀଳ ଥିଲେ ଯେ, ରମଣୀମାନଙ୍କ ପ୍ରଲୋଭନ-ବାକ୍ୟ ତାଙ୍କ କର୍ଣ୍ଣରେ ପ୍ରବେଶ କରି ପାରୁ ନ ଥିଲା । ଏଥିପାଇଁ ତାଙ୍କର "କାଲା ପାହାଡ" ନାମକରଣ ହୋଇଥିଲା । ଭ୍ରମକ୍ରମେ ସେ ଓଡିଶାରେ "କଳା ପାହାଡ"

ନାମରେ ପରିଚିତ । କିନ୍ତୁ ନାମ ଭୁଲ ହେଉ ବା ନହେଉ, ସେ ଓଡ଼ିଶାରେ ଯେଉଁ ନାମରେ ପରିଚିତ, ଆମ୍ଭେମାନେ ତାଙ୍କୁ ସେହି ନାମରେ ଡାକିବୁଁ ।

କଳାପାହାଡ଼ ଯେ କେବଳ ନିଷ୍ଠାପର ବ୍ରାହ୍ମଣ ଥିଲେ, ଏମନ୍ତ ନୁହେ । ତାଙ୍କ ରଣ-ନୈପୁଣ୍ୟ ମଧ୍ୟ ଅସାଧାରଣ ଥିଲା । ତାଙ୍କ ସମର-କୌଶଳରେ ପ୍ରୀତ ହୋଇ ସୁଲତାନ ସୁଲେମାନ ତାଙ୍କୁ ସେନାପତି-ପଦରେ ବରଣ କରିଥିଲେ । କଳାପାହାଡ଼ଙ୍କ ସେନାପତିତ୍ୱରେ ସୁଲତାନ-ବାହିନୀ ଅନେକ ଯୁଦ୍ଧରେ ଜୟଲାଭ କରିଥିଲା । ଓଡ଼ିଶା ବିରୁଦ୍ଧରେ ସମରଯାତ୍ରା କରିବାନିମନ୍ତେ ସୁଲତାନ ବାରମ୍ବାର ଅନୁରୋଧ କଲେ ସୁଦ୍ଧା କଳାପାହାଡ଼ ସେଥିରେ କର୍ଣ୍ଣପାତ କରି ନ ଥିଲେ । ତାଙ୍କ ସମୟରେ ବିଶାଳ ଭାରତବର୍ଷରେ ସ୍ୱାଧୀନ ହିନ୍ଦୁରାଜ୍ୟ ମଧ୍ୟରେ ଓଡ଼ିଶା ଅନ୍ୟତମ ଥିଲା । ସ୍ୱାଧୀନ ହିନ୍ଦୁରାଜ୍ୟ ବିରୁଦ୍ଧରେ ଯୁଦ୍ଧ କରିବାକୁ କେଉଁ ହିନ୍ଦୁର ମନ ବଳିବ ?

କଳାପାହାଡ଼ଙ୍କ ବୀର୍ଯ୍ୟ ଓ ଶୌର୍ଯ୍ୟରେ ମୁଗ୍ଧ ହୋଇ ସୁଲତାନ ସୁଲେମାନଙ୍କ କନ୍ୟା ତାଙ୍କ ପାଣିଗ୍ରହଣାଭିଳାଷିଣୀ ହୋଇଥିଲେ । ଏ ବିଷୟରେ ସୁଲତାନ ନିଜେ ଯତ୍ନେ ଚେଷ୍ଟା କଲେ ସୁଦ୍ଧା କଳାପାହାଡ଼ ସେଥିରେ ସ୍ୱୀକୃତ ହେଲେ ନାହିଁ । ପରେ ସୁଲତାନ-କନ୍ୟାଙ୍କ ଐକାନ୍ତିକତାର ପରିଚୟ ପାଇବାରୁ ତାଙ୍କ ପର୍ବତ-ସୁଲଭ ଦୃଢ଼ତା କେଉଁଆଡ଼େ ଉଭେଇ ଗଲା । ପରିଶେଷରେ ସେ ପାଣିଗ୍ରହଣରେ ସମ୍ମତି ପ୍ରଦାନ କଲେ ।

କଳାପାହାଡ଼ ଏଥିପୂର୍ବେ ବିବାହିତ ହୋଇଥିଲେ । ନିଜ ଗୃହରେ ବିବାହିତା ହିନ୍ଦୁ-ପତ୍ନୀ ଅଛନ୍ତି; ପୁଣି ସୁଲତାନ ଗୃହରେ ନବୋଢ଼ା ଯବନୀ ପତ୍ନୀ ଅଛନ୍ତି । ଅଧୁନା ସେ କାହାକୁ ଛାଡ଼ି କାହାକୁ ରଖିବେ ? ଉଭୟ ପତ୍ନୀ ସମଧର୍ମାବଲମ୍ବିନୀ ଥିଲେ ଚିନ୍ତାର କୌଣସି କାରଣ ନ ଥିଲା । ଉପସ୍ଥିତ କ୍ଷେତ୍ରରେ ସ୍ତ୍ରୀଦ୍ୱୟଙ୍କ ଧର୍ମର ବିଭିନ୍ନତା ହେତୁରୁ ସେ ବିଷମ ସଙ୍କଟରେ ପଡ଼ିଥିଲେ ।

ପରିଶେଷରେ କଳାପାହାଡ ସ୍ଥିର କଲେ ଯେ, ସେ ପୁନର୍ବାର ହିନ୍ଦୁଧର୍ମ ଗ୍ରହଣ କରି ଯବନୀ ସ୍ତ୍ରୀଙ୍କୁ ମଧ୍ୟ ହିନ୍ଦୁଧର୍ମରେ ଦୀକ୍ଷିତା କରାଇବେ । ତାହା-ହେଲେ ଆଉ କିଛି ଗୋଳମାଳ ରହିବ ନାହିଁ । ଏଥିପାଇଁ ସେଯୁଗର ପ୍ରଥାନୁସାରେ ସେ ଉତ୍କଳ-ସମ୍ରାଟ ମୁକୁନ୍ଦଦେବଙ୍କ ଶରଣାପନ୍ନ ହେଲେ । ମୁକୁନ୍ଦଦେବଙ୍କ ସହିତ ତ୍ରିବେଣୀ-ଘାଟରେ କଳାପାହାଡଙ୍କର ଯେଉଁ କଥୋପକଥନ ହୋଇଥିଲା, ପାଠକମାନେ ତାହା ଜାଣନ୍ତି ।

କଳାପାହାଡ ଭାବିଥିଲେ, ଉଦାର ବୈଷ୍ଣବଧର୍ମ ତାଙ୍କୁ ପୁନର୍ବାର ଗ୍ରହଣ କରିବ । କିନ୍ତୁ ସେ ଯେଉଁ ସର୍ତ୍ତରେ ଆସିବାକୁ ଇଚ୍ଛା କରିଥିଲେ, ମୁକୁନ୍ଦ-ଦେବ ତହିଁରେ ସ୍ୱୀକୃତ ହେଲେ ନାହିଁ । ଏଥିରେ ନିରାଶା ସଙ୍ଗେ ସଙ୍ଗେ କଳାପାହାଡଙ୍କ ମନରେ କ୍ରୋଧର ସଞ୍ଚାର ହେଲା । ସେ ସ୍ୱତଃପ୍ରବୃତ୍ତ ହୋଇ ହିନ୍ଦୁଧର୍ମ ପୁନର୍ବାର ଗ୍ରହଣ କରିବାକୁ ଇଚ୍ଛା ପ୍ରକାଶ କରିଥିଲେ; କିନ୍ତୁ ହିନ୍ଦୁଧର୍ମ ତାଙ୍କୁ ପ୍ରତ୍ୟାଖ୍ୟାନ କଲା । ଯେଉଁ ଧର୍ମ ଏପରି ଅନୁଦାର, ସେହି ଧର୍ମକୁ ଉଚ୍ଛେଦ ସାଧନ କରିବାକୁ ହେବ । ପୁଣି ରଜା ମୁକୁନ୍ଦଦେବଙ୍କ ସଙ୍ଗେ କଥୋପକଥନ କରିବା ସମୟରେ କଳାପାହାଡ ଦେଖିଲେ ଯେ, ତାଙ୍କ ଅନନ୍ୟସୁନ୍ଦରୀ ରାଣୀ ନିକଟରେ ବସିଅଛନ୍ତି । ଏପରି ତ୍ରିଭୁବନ-ମୋହିନୀ ମୂର୍ତ୍ତି ସେ ପୂର୍ବେ କେବେ ଦେଖି ନ ଥିଲେ । ଯେ ରମଣୀ-ପ୍ରଲୋଭନର ବହିର୍ଭୂତ ଥିବାରୁ "ବଧୀର ପର୍ବତ" ଆଖ୍ୟା ପାଇଥିଲେ, ଅଧୁନା ସେହି କଳାପାହାଡ଼ ମୁକୁନ୍ଦଦେବଙ୍କ ରାଣୀଙ୍କୁ ଦେଖି କାମଶରରେ ପ୍ରପୀଡିତ ହେଲେ । ଦୁର୍ଦ୍ଦିନ ଉପସ୍ଥିତ ହେଲେ ମୁନିମାନଙ୍କର ମଧ୍ୟ ମତିଭ୍ରମ ଘଟିଥାଏ; କଳାପାହାଡ଼ ସ୍ଥିର କେତେ ମାତ୍ର ।

ମୁକୁନ୍ଦଦେବଙ୍କଠାରୁ ବିଦାୟ ନେଇ କଳାପାହାଡ ସ୍ଥିର କଲେ ଯେ, ଯେ କୌଣସି ପ୍ରକାରେ ହେଉ ମୁକୁନ୍ଦଦେବଙ୍କ ରାଣୀଙ୍କୁ କରଗତ କରିବାକୁ ହେବ । ସ୍ଥିର ହିନ୍ଦୁଧର୍ମ ତାଙ୍କ ପ୍ରତାପକୁ ନିଡରି ତାଙ୍କୁ ପ୍ରତ୍ୟାଖ୍ୟାନ

କଲା— ଏଥିର ମଧ୍ୟ ପ୍ରତିଶୋଧ ନେବାକୁ ହେବ । ଏହା ଭାବି ସେ ସୁଲତାନ୍ ନିକଟକୁ ଯାଇ ଓଡ଼ିଶା ବିରୁଦ୍ଧରେ ଯୁଦ୍ଧ-ଯାତ୍ରା କରିବାକୁ ଆଦେଶ ଭିକ୍ଷା କଲେ । କଳାପାହାଡ଼ଙ୍କ କଥା ଶୁଣି ସୁଲତାନ୍ ସୁଲେମାନ ବିସ୍ମୟାଭିଭୂତ ହେଲେ । ଏହି ଓଡ଼ିଶା ଜୟ କରିବା ନିମନ୍ତେ ସେ କଳା-ପାହାଡ଼ଙ୍କୁ କେତେ ପ୍ରାର୍ଥନା କରିଛନ୍ତି । କିନ୍ତୁ କଳାପାହାଡ଼ ତାଙ୍କ ପ୍ରାର୍ଥନା ରକ୍ଷା କରି ନାହାନ୍ତି । ଆଜି ସେ ଅପ୍ରତ୍ୟାଶିତଭାବରେ ଏହି ପ୍ରସ୍ତାବ ଉପସ୍ଥାପିତ କରିବାରୁ ସୁଲତାନ୍ ପ୍ରଥମେ ନିଜ କର୍ଣ୍ଣକୁ ବିଶ୍ୱାସ କରି ପାରିଲେ ନାହିଁ । ପରେ କଳାପାହାଡ଼ଙ୍କ ଅଟଳ ପ୍ରତିଜ୍ଞା ଦେଖି ସେ ଉକ୍ତ ବିଷୟରେ ସମ୍ମତି ପ୍ରଦାନ କଲେ । ଓଡ଼ିଶା ବିରୁଦ୍ଧରେ ଯୁଦ୍ଧ-ଯାତ୍ରା କରିବା ନିମନ୍ତେ ବିପୁଳ ଆୟୋଜନ ଆରମ୍ଭ ହେଲା ।

( ୪ )

ରାଜା ପ୍ରତାପରୁଦ୍ର ଦେବ ଓଡ଼ିଶାର ଗଙ୍ଗବଂଶୀୟ ପ୍ରକୃତ ଶେଷ ନୃପତି । ତାଙ୍କ ସମୟରେ ମହାତ୍ମା ଚୈତନ୍ୟ ଦେବ ଓଡ଼ିଶାରେ ବୈଷ୍ଣବ-ଧର୍ମ ପ୍ରଚାର କରିଥିଲେ । ସ୍ୱୟଂ ପ୍ରତାପରୁଦ୍ର ମଧ୍ୟ ଚୈତନ୍ୟଙ୍କ ଧର୍ମରେ ଦୀକ୍ଷିତ ହୋଇଥିଲେ । ଲୋକ-ମୁଖରେ ପ୍ରକାଶ ଯେ, ଦୀକ୍ଷାଗ୍ରହଣ ସମୟରେ ପ୍ରତାପରୁଦ୍ର ତାଙ୍କ ଅନ୍ତେ ଗଙ୍ଗବଂଶ ଶେଷ ହେବାକୁ ଚୈତନ୍ୟଦେବଙ୍କଠାରେ କାମନା କରିଥିଲେ ।

ପ୍ରତାପରୁଦ୍ରଙ୍କ ପରେ ଗଙ୍ଗବଂଶାବତଂସ କୌଣସି ନରପତି ଓଡ଼ିଶାର ସିଂହାସନ ଆରୋହଣ କରି ନାହାନ୍ତି । ତାଙ୍କ ମନ୍ତ୍ରୀମାନେ ଏହି ସିଂହାସନ ଅରୋହଣ କରିଥିଲେ । ରାଜା ମୁକୁନ୍ଦଦେବ ଓଡ଼ିଶାର ଶେଷ ମନ୍ତ୍ରି-ନୃପତି ।

ଯେପରି ମୂଳ ଦୁର୍ବଳ ହେଲେ ସମଗ୍ର ବୃକ୍ଷ ଦୁର୍ବଳ ହୋଇଯାଏ, ସେହିପରି ସମ୍ରାଟଙ୍କ ସିଂହାସନ ଦୁର୍ବଳ ହେବାରୁ ବିଶାଳ ଉତ୍କଳ ସାମ୍ରାଜ୍ୟ

ହୀନବଳ ହୋଇ ପଡ଼ିଲା। ସାମନ୍ତ ନରପତିମାନେ ନିଜ ନିଜ ସ୍ୱାଧୀନତା ଘୋଷଣା କରିବାକୁ ଲାଗିଲେ। ଏତଦ୍ଦ୍ୱାରା ସମଗ୍ର ସାମ୍ରାଜ୍ୟ ଅସଂଖ୍ୟ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ବିଭକ୍ତ ହେଲା। ପୂର୍ବୋକ୍ତ ମନ୍ତ୍ରିମାନେ କେବଳ ନାମମାତ୍ର ଉତ୍କଳର ଅଧୀଶ୍ୱର ହୋଇ ରହିଲେ।

ମୁକୁନ୍ଦଦେବ ଅନେକ ଯୁଦ୍ଧରେ ଜୟଲାଭ କରିଥିବା ଇତିହାସରେ ପ୍ରକାଶ। ସେ ଗଙ୍ଗାପର୍ଯ୍ୟନ୍ତ ବିସ୍ତୃତ ସମଗ୍ର ଦେଶ ଜୟ କରି ଗଙ୍ଗାନଦୀରେ ପ୍ରସିଦ୍ଧ ତ୍ରିବେଣୀଘାଟ ନିର୍ମାଣ କରିଥିଲେ। ଲୋକେ କହନ୍ତି, ତାଙ୍କ ମାତାଙ୍କ ଅନୁରୋଧ ରକ୍ଷା କରିବା ନିମନ୍ତେ ସେ ଗଙ୍ଗାରୁ ଗୋଟିଏ ଧାର ଆଣି ପୁରୀ ବାଟେ ସମୁଦ୍ରରେ ପକାଇବାକୁ ସ୍ଥିର କରିଥିଲେ। ଈଶ୍ୱର ତାଙ୍କୁ ଦୀର୍ଘାୟୁ କରିଥିଲେ ସେ ଏହି କାର୍ଯ୍ୟ ସମ୍ପନ୍ନ କରିପାରିଥାନ୍ତେ। ତାହାହେଲେ ପୁରୀର ମାହାତ୍ମ୍ୟ ବହୁଗୁଣରେ ବୃଦ୍ଧିପ୍ରାପ୍ତ ହୋଇଥାନ୍ତା। କିନ୍ତୁ ଯେଉଁ କାର୍ଯ୍ୟ କରିବାକୁ ଈଶ୍ୱର ଅନିଚ୍ଛୁକ, ମନୁଷ୍ୟଦ୍ୱାରା ସେ କାର୍ଯ୍ୟ ହୋଇ ପାରେ କି ?

କୌଣସି କୌଣସି ଐତିହାସିକଙ୍କ ମତରେ ବୈଷ୍ଣବ-ଧର୍ମ ଓଡ଼ିଶାର ପତନର ମୂଳ କାରଣ। ସେମାନେ କହନ୍ତି, ବୈଷ୍ଣବ-ଧର୍ମ ଗ୍ରହଣ କରିବା ହେତୁରୁ ଲୋକେ ଯୁଦ୍ଧ-ବିଦ୍ୟାରେ ବୀତଶ୍ରଦ୍ଧ ହୋଇ ପଡ଼ିଲେ। ସର୍ବଦା ହରି-ନାମ-ସଂକୀର୍ତ୍ତନରେ ସେମାନଙ୍କ ସମୟ ଅତିବାହିତ ହେଲା। ଐତିହାସିକମାନଙ୍କର ଏ ବ୍ୟାଖ୍ୟା ସଂପୂର୍ଣ୍ଣ ହାସ୍ୟାସ୍ପଦ। ଧର୍ମ କୌଣସି ଯୁଗରେ କୌଣସି ଦେଶର ପତନର କାରଣ ହୋଇନାହିଁ। ପ୍ରକୃତ କଥା ଏହି ଯେ, ଉତ୍କଳଦେଶ ବହୁସଂଖ୍ୟକ କ୍ଷୁଦ୍ର ରାଜ୍ୟରେ ବିଭକ୍ତ ହେବାଯୋଗୁଁ ଦୁର୍ବଳ ହୋଇ ପଡ଼ିଲା। ପୁଣି ଜଣେ ମନ୍ତ୍ରୀ ସିଂହାସନର ଅଧିକାରୀ ଥିବା କଥା ଅନେକ ସାମନ୍ତ ରାଜାଙ୍କୁ ଅସହ୍ୟ ହେଲା। ଏଣୁକରି ସେମାନେ

ବଦ୍ରୋହାଚରଣ କଲେ । ଦେଶରେ ଏକତାର ଅଭାବ ହେବାରୁ ପ୍ରକୃତ ଦୁର୍ବଳତା ଜାତ ହେଲା ।

ମୁକୁନ୍ଦଦେବଙ୍କ ରାଜତ୍ୱ ସମୟରେ ଉତ୍କଳରେ ଶୌର୍ଯ୍ୟର ଅଭାବ ନଥିଲା । ମୁକୁନ୍ଦଦେବ ନିଜେ ଦିଗ୍‌ବିଜୟୀ ବୀରପୁରୁଷ ଥିଲେ । ତାଙ୍କ ସମୟରେ ଧର୍ମ-କ୍ଷେତ୍ରରେ ଓ ଯୁଦ୍ଧ-କ୍ଷେତ୍ରରେ ଉତ୍କଳ ଅନନ୍ୟସାଧାରଣ ଖ୍ୟାତି ଲାଭ କରିଥିଲା । ଆମ୍ଭେମାନେ ଏଥିପୂର୍ବେ ଏଥିର ପରିଚୟ ପ୍ରଦାନ କରିଅଛୁଁ ।

ଯେତେବେଳେ ରାଜା ମୁକୁନ୍ଦଦେବ କଳାପାହାଡ ମୁଖରୁ ଶୁଣିଲେ ଯେ ସେ ତାଙ୍କ ପ୍ରଶ୍ନର ଉତ୍ତର ଯୁଦ୍ଧ-କ୍ଷେତ୍ରରେ ଦେବେ, ସେତେବେଳେ ତାଙ୍କର ବୁଝିବାକୁ ଆଉ ବାକି ରହିଲା ନାହିଁ ଯେ ସୁଲତାନ୍ ସୁଲେମାନଙ୍କ ସଙ୍ଗେ ଯୁଦ୍ଧ କରିବାକୁ ବିପୁଳ ଆୟୋଜନ ଆବଶ୍ୟକ ହେବ । କିନ୍ତୁ ସେ ଏକାକୀ ବିଜୟୀ ଯବନ-ବାହିନୀ ବିରୁଦ୍ଧରେ ଛିଡା ହୋଇ ପାରିବେ କି ? ସମଗ୍ର ଦେଶର ସମ୍ମିଳିତ ଚେଷ୍ଟା ହୋଇଥିଲେ କଳାପାହାଡଙ୍କର ସାଧ୍ୟ ନ ଥିଲା ଯେ, ସେ ଉତ୍କଳରେ ପ୍ରବେଶ ଲାଭ କରି ପାରି ଥାନ୍ତେ । କିନ୍ତୁ ଉତ୍କଳ ପ୍ରତି ବିଧାତା ବାମ ହୋଇ ସାରିଥିଲେଣି । ଏଣୁକରି ରାଜା ମୁକୁନ୍ଦଦେବଙ୍କୁ ଏକାକୀ ଯୁଦ୍ଧ କରିବାକୁ ପଡିଥିଲା । କଳାପାହାଡ ମାର୍ଗରେ ଯତ୍‌ସାମାନ୍ୟ ବିଘ୍ନ ଅତିକ୍ରମ କରି ଯାଜପୁରରେ ପ୍ରବିଷ୍ଟ ହେଲେ ।

କଳାପାହାଡ ଓ ମୁକୁନ୍ଦଦେବଙ୍କ ମଧ୍ୟରେ ଭୀଷଣ ସଂଗ୍ରାମ ଆରମ୍ଭ ହେଲା । ଯୁଦ୍ଧର ବିସ୍ତୃତ ବିବରଣ ଇତିହାସରେ ପ୍ରାପ୍ତବ୍ୟ । ଏଠାରେ କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ, ଯୁଦ୍ଧରେ ମୁକୁନ୍ଦଦେବଙ୍କର ମୃତ୍ୟୁ ହେଲା ଏବଂ ତାଙ୍କ ମୃତ୍ୟୁ ସଙ୍ଗେ ସଙ୍ଗେ ଓଡିଶାର ଗୌରବ-ରବି ଚିରକାଳ ନିମନ୍ତେ ଅସ୍ତମିତ ହେଲା ।

କଳାପାହାଡଙ୍କ ଓଡିଶା ଆକ୍ରମଣ ବିଷୟ ଭାବିଲେ ହୃଦୟ ଅବସାଦରେ ପୂର୍ଣ୍ଣ ହୁଏ । ସେ ଓଡିଶାରେ ଯେତେ ହିନ୍ଦୁ ମନ୍ଦିର ଓ ଦେବଦେବୀ-ମୂର୍ତ୍ତି ଧ୍ୱଂସ

କରିଅଛନ୍ତି, ତାହା ବହୁ ଶତାବ୍ଦୀରେ ସୁଦ୍ଧା ପୂର୍ଣ୍ଣ ହୋଇ ପାରିବ ନାହିଁ । ବିଶେଷତଃ ସେ ପୁରୀ-ମନ୍ଦିରର ବିଗ୍ରହଙ୍କର ଯେଉଁ ଦୁରବସ୍ଥା ଘଟାଇଅଛନ୍ତି, ତାହା କଦାପି ଭୁଲି ହେବ ନାହିଁ ।

( ୬ )

ଆଜ ମୁକୁନ୍ଦଦେବଙ୍କ ରାଣୀଙ୍କ ଅନ୍ତଃପୁରରେ ଅତିଥି-ଅଭ୍ୟର୍ଥନାର ବିପୁଳ ଆୟୋଜନ ହୋଇଅଛି । ବିଜୟୀ କଳାପାହାଡ ଯାଜପୁର ଦୁର୍ଗ ଅଧିକାର କରି ରାଣୀଙ୍କଦ୍ୱାରା ଅଭ୍ୟର୍ଥିତ ହେବାକୁ ଇଚ୍ଛା ପ୍ରକାଶ କରିବାରୁ ରାଣୀ ରାଜୋଚିତ ସମ୍ମାନରେ ତାଙ୍କୁ ସତ୍କାର କରିବା ନିମନ୍ତେ ସକଳ ପ୍ରକାର ବନ୍ଦୋବସ୍ତ କରିଅଛନ୍ତି । କଳାପାହାଡଙ୍କ ଆଶା ଫଳବତୀ ହୋଇଅଛି । ସବୁବେଳେ ପ୍ରଥମ ଦର୍ଶନ-କଥା ତାଙ୍କ ସ୍ମୃତି-ପଟରେ ନାଚୁଅଛି । ଆହା ! କି ସୁନ୍ଦର ମୁଖଟି ! ସଂସାର-ମରୁଭୂମିରେ ଏହି ମୁଖ ଏକମାତ୍ର ଆଶା-ମରୀଚିକା । ଏହି ସୌନ୍ଦର୍ଯ୍ୟ ଲୋଭରେ ତ କଳାପାହାଡଙ୍କ ସମସ୍ତ କଷ୍ଟସ୍ୱୀକାର । ଲୋକେ ଜାଣନ୍ତି, କଳାପାହାଡ ହିନ୍ଦୁଧର୍ମ-ବିରୁଦ୍ଧରେ ଅଭିଯାନ କରିଥିଲେ । କିନ୍ତୁ ଅସଲ କଥା ଅଧିକାଂଶ ଲୋକ ଜାଣନ୍ତି ନାହିଁ । ହିନ୍ଦୁ ଧର୍ମର ଉଚ୍ଛେଦ-ସାଧନ ଗୋଟିଏ ବ୍ୟପଦେଶ ମାତ୍ର । ଯାହା ହିନ୍ଦୁର ପ୍ରାଣରୁ ଅଧିକ, ଯହିଁ ନିମନ୍ତେ ଅସଂଖ୍ୟ ହିନ୍ଦୁ ନରନାରୀ ଅକାତରରେ ପ୍ରାଣ ବିସର୍ଜ୍ଜନ କରିଅଛନ୍ତି, ସେହି ସତୀତ୍ୱ-ରତ୍ନ ଲୁଣ୍ଠନ କରିବାନିମନ୍ତେ କଳାପାହାଡ ଯେ ଓଡିଶା ବିରୁଦ୍ଧରେ ଖଡ୍ଗ ଉତ୍ତୋଳନ କରିଥିଲେ, ଏ କଥା କିମ୍ବଦନ୍ତୀର କ୍ଷୁଦ୍ର ସୀମାମଧ୍ୟରେ ଆବଦ୍ଧ ରହିଅଛି । ଇତିହାସ ଏ କଥା ଜଣେ ନାହିଁ କିମ୍ବା ଜାଣିବାକୁ ଚେଷ୍ଟା କରିନାହିଁ ।

ଆଜ କଳାପାହାଡଙ୍କ ହୃଦୟ ଆନନ୍ଦରେ ଉଚ୍ଛୁଳି ଉଠୁଅଛି । ସମ୍ମୁଖରେ ଉତ୍କୃଷ୍ଟ ଖାଦ୍ୟଦ୍ରବ୍ୟ ରଖା ଯାଇଅଛି । ଆଉ ପରିବେଶିକା ସ୍ୱୟଂ

ମୁକୁନ୍ଦଦେବଙ୍କ ରାଣୀ । ଯେଉଁ ମୁଖ ଦର୍ଶନ ନିମନ୍ତେ କଳାପାହାଡ ଏତେଦୂର ଆସି ଅଛନ୍ତି, ସେହି ସୁନ୍ଦର ମୁଖଟି ଆଜ ତାଙ୍କ ସମ୍ମୁଖରେ ! ସେହି ମୁଖ ଦେଖି ସେ ମନେ ମନେ କେତେ ଆକାଶ-କୁସୁମ ତୋଳୁ ଅଛନ୍ତି । ଏହି ଭୁବନ-ମୋହିନୀ ତାଙ୍କ ଅଙ୍କ-ଶାୟିନୀ ହେବେ, ଏଥିରୁ ବଳି ସୁଖକର କଥା କଳାପାହାଡଙ୍କ ପକ୍ଷରେ ଆଉ କଣ ହୋଇପାରେ ?

କିନ୍ତୁ ଏ କଣ ? ରାଣୀ ସହସା ଅନ୍ତର୍ହିତା ହେଲେ କାହିଁକି ? କଳାପାହାଡ ତ ଏହା ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ ! ତେବେ କଣ ତାଙ୍କର ସମସ୍ତ କଷ୍ଟ ବିଫଳ ହେବ ?

ରାଣୀଙ୍କ ତିରୋଧାନର ଅବ୍ୟବହିତ ପରେ ଗୋଟିଏ ଦାସୀ ଆସି କଳାପାହାଡ଼ଙ୍କ ସମ୍ମୁଖରେ ଉପସ୍ଥିତ ହେଲା । ତାକୁ ପଚାରି କଳାପାହାଡ଼ ଅବଗତ ହେଲେ ଯେ, ରାଣୀ ପରିଚ୍ଛଦ ପରିବର୍ତ୍ତନ କରିବାକୁ କକ୍ଷାନ୍ତରକୁ ଯାଇଅଛନ୍ତି । ଉତ୍କଳ-ବିଜୟୀ ବୀରପୁରୁଷଙ୍କୁ ଅଭ୍ୟର୍ଥନା କରିବା ନିମନ୍ତେ ରାଣୀ ତାଙ୍କର ଶ୍ରେଷ୍ଠ ବସନ-ଭୂଷଣ ବ୍ୟବହାର କରିବେ । ଦାସୀଠାରୁ ଏ ସମ୍ବାଦ ପାଇ କଳାପାହାଡ ଆନନ୍ଦ-ସାଗରରେ ମଗ୍ନ ହେଲେ । ପାପୀ ବାରମ୍ବାର ନୈରାଶ୍ୟର ଚିହ୍ନ ଦେଖିଲେ ସୁଦ୍ଧା କଦାପି ହତାଶ ହୁଏ ନାହିଁ । ସାମାନ୍ୟ ଆଶାର କଥାରେ ଆଶ୍ୱସ୍ତ ହୋଇ ମନକୁ ପ୍ରବୋଧ ଦିଏ । କବି ଗଙ୍ଗାଧର ଏ ସମ୍ବନ୍ଧରେ ଯଥାର୍ଥ କହିଅଛନ୍ତି—

"ତା' ହୃଦକୁ ଅସେ ଯେବେ ନୈରାଶ୍ୟ ଦଉଡ,
ମାୟାବିନୀ ଆଶା ଦିଏ ତ୍ୱରିତ ଘଉଡ ।"

ରାଣୀଙ୍କୁ ଯଥାଯୋଗ୍ୟ ସମ୍ମାନ କରିବା ନିମନ୍ତେ କଳାପାହାଡ ନିଜକୁ ପ୍ରସ୍ତୁତ କରିବାକୁ ଲାଗିଲେ । କିନ୍ତୁ ରାଣୀ ଆସୁ ନାହାନ୍ତି କାହିଁକି ? ସମଗ୍ର ରାଜପ୍ରାସାଦ ନିଃଶବ୍ଦ ହୋଇଅଛି କାହିଁକି ? କଳାପାହାଡଙ୍କୁ ପ୍ରତୀୟମାନ

ହେଲା, ଯେପରି ରାଜପ୍ରାସାଦ ଜନ-ମାନବ-ଶୂନ୍ୟ ହୋଇଅଛି—ରାଜପ୍ରାସାଦର କାର୍ଯ୍ୟାବଳୀ ଯେପରି କଳଦ୍ୱାରା ପରିଚାଳିତ ହେଉଅଛି । ସେ ବାରମ୍ବାର ଦାସୀକୁ ପଚାରୁଅଛନ୍ତି, "ରାଣୀ କୁଆଡେ ଗଲେ ?" ଦାସୀର ସବୁବେଳେ ଏକମାତ୍ର ଉତ୍ତର, "ରାଣୀ ବେଶ ବଦଳାଇବାକୁ ଯାଇଅଛନ୍ତି ।"

ବେଶ ବଦଳାଇବା ନିମନ୍ତେ ତ ଏତେ ସମୟ ଆବଶ୍ୟକ ହୁଏ ନାହିଁ । ତେବେ ରାଣୀ ଏତେ ବିଳମ୍ବ କଲେ କାହିଁକି ? କ୍ରମଶଃ ବିଳମ୍ବ ଅସହ୍ୟ ହୋଇ ପଡ଼ିଲା । ନାଗରବର ଅଭିସାର ମନ୍ଦିରରେ ଆଉ କେତେ କାଳ ଅପେକ୍ଷା କରି ରହିବେ ? ଦେଖୁଁ ଦେଖୁଁ ତାଙ୍କର ଧୈର୍ଯ୍ୟଚ୍ୟୁତି ସଂଘଟିତ ହେଲା । ସେ ଆଉ ସ୍ଥିର ହୋଇ ରହି ପାରିଲେ ନାହିଁ—ଦାସୀର ନିଷେଧ ସତ୍ତ୍ୱେ ବହିର୍ମନ୍ଦିରକୁ ପ୍ରସ୍ଥାନ କଲେ ।

( ୬ )

ବୈତରଣୀ-ଘାଟରେ ଏ କି କୋଳାହଳ ? ରାଜଅନ୍ତଃପୁରର ରମଣୀଗୁଡ଼ିକ ବହୁମୂଲ୍ୟ ବସନ-ଭୂଷଣ ପରିଧାନ କରି ସପ୍ତମାତୃକା ଘାଟରେ ଦଣ୍ଡାୟମାନ ହୋଇଅଛନ୍ତି । ସମସ୍ତେ ଆଲୁଳାୟିତକୁନ୍ତଳା, ସମସ୍ତଙ୍କ ମୁଖରେ ହର୍ଷ ଓ ବିଷାଦର ଚିହ୍ନ ଯୁଗପତ୍ ଦେଖା ଯାଉଅଛି । ରମଣୀମାନଙ୍କ ନେତୃତ୍ୱ ଗ୍ରହଣ କରି ରାଣୀ ସ୍ୱୟଂ ବିଚଳିତ ହସ୍ତରେ ଛିଡ଼ା ହୋଇ ଅଛନ୍ତି ।

ହଠାତ୍ ଘାଟର ନିସ୍ତବ୍ଧତା ଭଙ୍ଗ କରି ରାଣୀ ସଙ୍ଗୀତ ଆରମ୍ଭ କଲେ । କି ହୃଦୟସ୍ପର୍ଶୀ ସେ ସଙ୍ଗୀତ ! ସଙ୍ଗୀତର ପ୍ରତ୍ୟେକ ମୂର୍ଚ୍ଛନାରୁ ସୁଧା ନିଃସୃତ ହୋଇ ଆକାଶକୁ ଅପୂର୍ବ ରସରେ ପ୍ଲାବିତ କରୁଥିଲା । ରାଣୀଙ୍କ ସଙ୍ଗେ ଅପର ରମଣୀମାନେ ମଧ୍ୟ ସଙ୍ଗୀତରେ ଯୋଗଦାନ କଲେ । ସେମାନେ

ଗୀତ ଗାଇ ଗାଇ ବୃତ୍ତାକାରରେ ସାତଥର ପ୍ରଦକ୍ଷିଣ କଲେ ଓ ନଦୀ କୂଳରେ ସରଳରେଖାକ୍ରମେ ଛିଡ଼ା ହେଲେ । ରମଣୀମାନଙ୍କୁ ଲକ୍ଷ୍ୟ କରି ରାଣୀ କହିଲେ—

" ଭଉଣୀମାନେ, ଆଜି ଆମ୍ଭମାନଙ୍କର ସୁଦିନ ଉପସ୍ଥିତ । ରମଣୀର କର୍ତ୍ତବ୍ୟ ସାଧନ କରିବାକୁ ଭଗବାନ୍ ଆମ୍ଭମାନଙ୍କୁ ସୁଯୋଗ ଦେଇ ଅଛନ୍ତି । ପୁରୁଷମାନେ ଯୁଦ୍ଧକ୍ଷେତ୍ରରେ ପ୍ରାଣବଳି ଦେଇ ପୂର୍ବପୁରୁଷମାନଙ୍କ ଗୌରବ ରକ୍ଷା କରିଅଛନ୍ତି । ବର୍ତ୍ତମାନ ଆମ୍ଭମାନଙ୍କ ଗୌରବ-ରକ୍ଷାର ସମୟ ଉପସ୍ଥିତ ହୋଇଅଛି । ତୁମ୍ଭେମାନେ ଯଦି ବୀରରମଣୀ ପ୍ରାୟ ବୈତରଣୀର ପୂତ ସଲିଳରେ ଝାସ ଦେବାକୁ ଇଚ୍ଛା କର, ତାହାହେଲେ ଆସ ମାତୃକ୍ରୋଡ଼କୁ ଗଲାପରି ବୈତରଣୀର ଅଗାଧ ଜଳରେ ଲୀନ ହେବା । ନତୁବା ଯଦି ଯବନର ଅଙ୍କବିହାରିଣୀ ହେବାକୁ ଇଚ୍ଛା କର, ତାହାହେଲେ ଏଠାରୁ ପ୍ରତ୍ୟାବୃତ୍ତ ହୁଅ । ଗୌରବ-ମୃତ୍ୟୁ ଓ ଯବନର କୁସୁମ-ତଳ୍ପ, ଏ ଦୁଇଥିରୁ ଗୋଟିଏ ବାଛି ନେବାକୁ ହେବ । ପୂର୍ବ ପୁରୁଷଗଣଙ୍କ ପବିତ୍ର ନାମରେ ଶପଥ କରି କହ, ତୁମ୍ଭେମାନେ କଣ କାମନା କରୁଅଛ ?"

ରମଣୀମାନେ ଏକସ୍ୱରରେ ଉତ୍ତରକଲେ, "ଆମ୍ଭେମାନେ ଗୌରବ-ମୃତ୍ୟୁ କାମନା କରୁଅଛୁଁ ।"

ରାଣୀ ପୂର୍ବବତ୍ ମଧୁର ଗମ୍ଭୀର ସ୍ୱରରେ କହିଲେ, "ଉତ୍ତମ । ଯଦି ଗୌରବ-ମୃତ୍ୟୁ ଇଚ୍ଛାକର, ତାହାହେଲେ ବୋଲ, ଦିଗବିଦିଗ ପ୍ରକମ୍ପିତ କରି ବୋଲ, ଯବନର କର୍ଣ୍ଣ ବଧୀର କରି ବୋଲ, 'ଜୟ ଉତ୍କଳର ଜୟ' ।" ରାଣୀଙ୍କ ମୁଖରୁ ବାକ୍ୟ ନସରୁଣୁ ରମଣୀମାନେ ଉତ୍କଳର ଜୟ-ନାଦରେ ଆକାଶ ବିଦୀର୍ଣ୍ଣ କଲେ । ପ୍ରଥମେ ରାଣୀ ଉତ୍କଳର ଜୟଗାନ କରି ନଦୀରେ ଝାସ ଦେଲେ । ତାଙ୍କ ପଛେ ପଛେ ଅନ୍ୟାନ୍ୟ ରମଣୀମାନେ ମଧ୍ୟ ନଦୀରେ ଝାସ ଦେଲେ ।

ସାବଧାନ କଳାପାହାଡ଼ ! ଏ ମହିମାମୟ ଦୃଶ୍ୟରେ ବିଘ୍ନ ଉପସ୍ଥିତ କରନାହିଁ । ଦେଖ, ମାନସ-ଚକ୍ଷୁ ଉନ୍ମୀଳନ କରି ଦେଖ, ତୁମ୍ଭ ହିନ୍ଦୁ-ରମଣୀମାନେ କିପରି ମରି ଜାଣନ୍ତି । ତୁମ୍ଭେ ଯେଉଁ ଧର୍ମବିରୁଦ୍ଧରେ, ଯେଉଁ ଧର୍ମର ସତ୍ତାବିରୁଦ୍ଧରେ ଖଡ୍ଗ ଧାରଣ କରିଅଛ, ସେହି ଧର୍ମର ମହତ୍ତ୍ୱ ହୃଦୟଙ୍ଗମ କରି ବର୍ତ୍ତମାନ ହେଲେ ଅନୁତପ୍ତ ହୁଅ । କିନ୍ତୁ ସେ ସ୍ୱର୍ଗୀୟ ଦୃଶ୍ୟ ଆଉ ନାହିଁ । ଦେଖୁଁ ଦେଖୁଁ ରମଣୀମାନେ ବୈତରଣୀର ଅତଳସ୍ପର୍ଶୀ ଜଳରେ ବିଲୀନ ହୋଇଗଲେ । ଓଡ଼ିଶାର ଗୌରବ-ପ୍ରଦୀପ ନିର୍ବାପିତ ହେଲା । ଓଡ଼ିଶାର ଉତ୍ଥାନ ଯେପରି ଗୌରବମୟ, ତାହାର ପତନ ମଧ୍ୟ ସେହିପରି ଗୌରବମୟ ।

( ୬ )

ଆମ୍ଭମାନଙ୍କ ବକ୍ତବ୍ୟ ଶେଷ ହୋଇଅଛି । କିନ୍ତୁ ପାଠକମାନଙ୍କ ନିକଟରୁ ବିଦାୟ ନେବା ପୂର୍ବରୁ ଆମ୍ଭେମାନେ ଉପସଂହାରରେ ଆଉ ଦୁଇ ଟିର କଥା କହିବାକୁ ଇଚ୍ଛା କରୁଁ ।

କଳାପାହାଡ଼ଙ୍କ ସମ୍ବନ୍ଧରେ ଗୋଟିଏ ବିଚିତ୍ର ପ୍ରବାଦ ପ୍ରଚଳିତ ଅଛି । ସେ ଥରେ ତାଙ୍କ "ମା"ଙ୍କୁ ପଚାରିଥିଲେ, "ମା, ସଂସାରରେ କେଉଁ କାର୍ଯ୍ୟ କଲେ ଯଶ ମିଳେ ?" ଜନନୀ କହିଲେ, "ଦେଉଳ ତୋଳାଇଲେ କିମ୍ବା ବାଟ ଅପରିଷ୍କାର କଲେ ।" କଥାର ଶେଷଭାଗଟି କଳାପାହାଡ଼ଙ୍କ ମନକୁ ପାଇଲା, ଓ ଗୁଣମଣି ପୁତ୍ର କୀର୍ତ୍ତିରକ୍ଷାର୍ଥ ପ୍ରଥମେ ଜନନୀଙ୍କୁ ହତ୍ୟା କରି ତାଙ୍କ ଚର୍ମରେ ସମର-ନିଶାଣ ନିର୍ମାଣ କଲେ । ପ୍ରବାଦଟି କେତେଦୂର ସତ୍ୟ, ଆମ୍ଭେମାନେ କହି ନପାରୁଁ । ବୋଧହୁଏ, ଏହା ବିଶ୍ୱାସଯୋଗ୍ୟ ନୁହେ । ସେ ଯାହାହେଉ, ଯେତେବେଳେ କଳାପାହାଡ଼ ଦେଖିଲେ ଯେ ତାଙ୍କ ଇଚ୍ଛା ବିଫଳ ହେଲା, ସେ ଆଉ ଗୌରବରେ ସ୍ୱଦେଶକୁ ପ୍ରତ୍ୟାବୃତ୍ତ ହେବାକୁ ଇଚ୍ଛୁକ ହେଲେନାହିଁ । ଉତ୍କଳରେ ଧ୍ୱଂସ-କାର୍ଯ୍ୟ ସଂସାଧନ କରି ଇତିହାସ-ପୃଷ୍ଠାରେ ଅମର ହେବାକୁ ସଙ୍କଳ୍ପ କଲେ ।

ଯାଜପୁର ଦୁର୍ଗ ଅଧିକାର କରି ସାରିଲା ଉତ୍ତାରୁ କଳାପାହାଡ଼ ଭୁବନେଶ୍ୱର ଅଭିମୁଖରେ ଅଗ୍ରସର ହେଲେ ଏବଂ ସେଠାରେ ସ୍ୱୀୟ ଧ୍ୱଂସ-କାର୍ଯ୍ୟ ସମାପ୍ତ କରି ପୁରୀ ଅଭିମୁଖରେ ଯାତ୍ରା କଲେ । ସେ ପୁରୀ ମନ୍ଦିର-ଭିତରେ ପ୍ରବେଶ-ଲାଭ କରିପାରି ନାହାନ୍ତି । ପଣ୍ଡାମାନେ ତାଙ୍କ ଆସିବା ପୂର୍ବରୁ ମନ୍ଦିରର ମୂର୍ତ୍ତିତ୍ରୟଙ୍କୁ ନେଇ ଲୁଚାଇ ରଖିଥିଲେ । କିନ୍ତୁ କଳା-ପାହାଡ଼ ତାହାଁର ସନ୍ଧାନ ପାଇ ପଣ୍ଡାମାନଙ୍କଠାରୁ ମୂର୍ତ୍ତିତ୍ରୟ ଛଡ଼ାଇ ଅଣି ଅଗ୍ନିରେ ଦଗ୍ଧ କଲେ । ପଣ୍ଡାମାନେ ମୂର୍ତ୍ତିଗୁଡ଼ିକର ଦଗ୍ଧାବଶେଷ ଉଦ୍ଧାର କରି ଲୁଚାଇ ରଖିବା ଉଦ୍ଦେଶ୍ୟରେ ସ୍ଥାନେ ସ୍ଥାନେ ଲୁଚି ରହିଲେ । କଳାପାହାଡ଼ ଯେତେ ଚେଷ୍ଟା କଲେ ସୁଦ୍ଧା ମୂର୍ତ୍ତିତ୍ରୟର ଲୋପ ସାଧନ କରି ପାରିଲେ ନାହିଁ ।

ଏହି ମୂର୍ତ୍ତି ଲୁଚାଇ ରଖିବା କାର୍ଯ୍ୟ ଗୋଟିଏ ବିଷମ କାଣ୍ଡ । କିମ୍ବଦନ୍ତୀ ମୂର୍ତ୍ତି ଗୁଡ଼ିକୁ କେଉଁ ସ୍ଥାନକୁ ଯେ ନେଇଛି, ତାହାଁର ଇୟତ୍ତା ନାହିଁ । ପ୍ରତ୍ୟେକ ରାଜ୍ୟ ଏଥିରେ ନିଜର ପାରିବାପଣ ଦେଖାଇବାକୁ ଚେଷ୍ଟା କରି ଅଛି । ମୂର୍ତ୍ତିଗୁଡ଼ିକ ବୁଲି ବୁଲି ଶେଷରେ ସମ୍ବଲପୁରରେ ଉପସ୍ଥିତ ହୋଇଥିବାର ପ୍ରକାଶ । ସେଠାରେ ଶଙ୍କରବନ୍ଧ ନିକଟରେ ଯୁଦ୍ଧ ହୋଇଥିଲା ଓ ଯୁଦ୍ଧରେ କଳାପାହାଡ଼ ସମ୍ପୂର୍ଣ୍ଣରୂପେ ପରାସ୍ତ ଓ ନିହତ ହୋଇଥିଲେ ।

ସମ୍ବଲପୁର District Gazetteer ର ଲେଖକ ଏହି କିମ୍ବ-ଦନ୍ତୀକୁ ବିଶ୍ୱାସ କରନ୍ତି ନାହିଁ । କଳାପାହାଡ଼ଙ୍କ ମୃତ୍ୟୁ ମଧ୍ୟ ଅନ୍ୟତ୍ର ହୋଇଥିବା କଥା ଇତିହାସରେ ମିଳେ । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଯେ, ଶଙ୍କରବନ୍ଧରେ ଅଦ୍ୟାବଧି ବହୁ ସଂଖ୍ୟକ ଯାବନିକ କବର ଅଛି । ପୁଣି ସମ୍ବଲପୁରରେ ଯେପରି ସମାରୋହ ସହକାରେ ଗୁଣ୍ଡିଚା-ଯାତ୍ରା ସମ୍ପନ୍ନ ହୁଏ, ପୁରୀଛଡ଼ା ଓଡ଼ିଶାର ଆଉ କୌଣସିଠାରେ ସେପରି ହୁଏ ନାହିଁ । ଅନ୍ତର ମଧ

ସମଲେଶ୍ୱରୀଙ୍କ ମନ୍ଦିରରେ ରକ୍ଷିତ ଢୋଲ କଳାପାହାଡଙ୍କ ଚର୍ମରୁ ନିର୍ମିତ ବୋଲି କଥିତ । ଏ କିମ୍ବଦନ୍ତୀର ଐତିହାସିକତା ସପ୍ରମାଣ କରିବାକୁ ଆମ୍ଭେମାନେ ପ୍ରସ୍ତୁତ ନୋହୁଁ । ତେବେ ଏଠାରେ ଆମ୍ଭେମାନେ ଏତିକି କହିବୁଁ ଯେ, ଭାରତୀୟମାନେ ଯଦି ପ୍ରକୃତ ଗବେଷଣା ସହକାରେ ଭାରତର ଇତିହାସ ପବିତ୍ର ଚିତ୍ତରେ ଲେଖନ୍ତି, ତାହା ହେଲେ ଆମ୍ଭ-ମାନଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ, ଭାରତର ଇତିହାସ ଭିନ୍ନ ଆକାର ଧାରଣ କରିବ । ଆମ୍ଭେମାନେ ତୃଷିତ-ନୟନରେ ସେ ଶୁଭଦିନକୁ ଅନାଇ ରହିଲୁଁ ।

ସମାପ୍ତ

[illegible] ରାଧାନାଥ [illegible]ଙ୍କଦ୍ୱାରା [illegible]ତ । ୧୯୨୪